# ଅବାଧ୍ୟ ପ୍ରଜାପତି

ଗଳ୍ପ ସଂକଳନ

**ଲେଖକ**

ଶ୍ରୀ ଅଚ୍ୟୁତାନନ୍ଦ ପତି
ଗ୍ରା: ପୋ: ନରହରି ପୁର
ଯାଜପୁର, କଟକ

**ପ୍ରକାଶକ**

କଟକ ଲେଖକ ସହଯୋଗ ସମିତି ଲିଃ
ପିଠାପୁର, କଟକ-୧

**ପ୍ରଥମ ପ୍ରକାଶ**

ଗଣେଶ ଚତୁର୍ଥୀ
୧୯୮୭

**ମୁଦ୍ରଣ**

ଭଗବତୀ ପ୍ରିଣ୍ଟର୍ସ
ରାଜାବଗିଚା, କଟକ-୯

**ମୂଲ୍ୟ**

ବୋର୍ଡ଼ ବନ୍ଧେଇ ଟ ୧୫-୦୦

**ABADHYA PRAJAPATI**

Short stories
by
Sri Achyutananda Pati

Published by
Cuttack Lekhak
Sahajoga Samiti Ltd.
Pithapur, Cuttack-1

First Publication :
Ganesh chaturthi
1987

Printed by :
Bhagabati Printers
Rajabagicha, Cuttack-9

Price
Board bound Rs. 15.00

# ଗଳ୍ପ ସୂଚୀ

ପୃଷ୍ଠା





# ଅର୍ଥଚ ଅଥର୍ବ

ବର୍ଷେ ଗଲା ଦୁଇବର୍ଷ କଟିଲା । ତିନି, ଚାରି, ପାଞ୍ଚ, ଛଅ ନୁହେଁ, ସାତ ବର୍ଷ ଟପିବା ଉପରେ । ସୁଦକ୍ଷିଣାର ମନରେ ସନ୍ଦେହର କାଦୁଅ ଜମି ଜମି ଜମାଟ ବାନ୍ଧି ପଥରର ଅବସାଦ ନେଇ ସାରିଥିଲା । ସୁଦର୍ଶନର ସାମର୍ଥ୍ୟ ଉପରୁ ଆସ୍ଥା ତାର ପୂରାପୂରି ମରିଯାଇଛି । ସ୍ତ୍ରୀ ହୋଇ ବଞ୍ଚିବାରେ ସଫଳତା ନାହିଁ, ସାର୍ଥକତା ନାହିଁ । ନାରୀ ହୋଇ ରହିବାରେ ପୂର୍ଣ୍ଣତା ନାହିଁ, ପରିତୃପ୍ତି ନାହିଁ । ତଥାପି ତାକୁ ରହିବାକୁ ପଡୁଛି । ଆଉ ସବୁ ଦିନେ ରହିବାକୁ ହେବ । ବିଫଳତା ବିମର୍ଷତା, ବ୍ୟର୍ଥତାର ଢେର ଭିତରେ ଭିତରର ବିଦ୍ରୋହକୁ ହଜମ କରି ବଞ୍ଚିବାକୁ କି ଭୟଙ୍କର ବ୍ୟବସ୍ଥା ? ସୁଦକ୍ଷିଣାର ଦେହ ଶୀତେଇ ଉଠେ । ସମାଜର ଲୁହାକଣ୍ଟା ଡେଇଁ ତା ଭିତରର ଅପଦେବତା ଖସି ପଳାଇବାକୁ ଛାଟିପିଟି ହୁଏ । ସମାଜ କୁଣ୍ଡଳୀର ମନ୍ତ୍ରପରିଧି ପାରି ହୋଇ ଆରପାରିକୁ କୁଦି ପଡ଼ିବାକୁ ମନ ତାର ହେଣ୍ଟାଳି ଉଠେ । ତା ପରେ ସେ ନିଜକୁ ଦେଖେ । ତାର ସ୍ଥିତିକୁ ସେ ବିଶ୍ଳେଷଣ କରେ । ଶୃଙ୍ଖଳାର ଗୁଣ୍ଠ ଭିତରେ ତାକୁ ଚକଟି ଚୁକଟି ମାଡ଼ି ଦିଆ ଯାଇଛି । ସମାଜର ଚାହିଦା ମୁତାବକ ସେ କଣ୍ଢେଇ ହୋଇ ବାହାରିଛି । ନିଜକୁ ଭାଙ୍ଗି ଦେବାକୁ ତାକୁ ଭାରି ଡରମାଡ଼େ ।

ସୁଦକ୍ଷିଣାର ଭିତରର ଘାଆ ତା' ଉପରର ମାଂସକୁ ଖାଇ ଚାଲିଛି । ସୁଦର୍ଶନ ସେ ଘାଆର ସନ୍ଧାନ ପାଇଛି । ଦିନକୁ ଦିନ ସୁଦକ୍ଷିଣାର ମୁହଁ ଉପରୁ ତା ବୟସର ଶ୍ରୀ ଶୁଖି ଶୁଖି ଯାଉଛି । ତା ହସରେ ବାସ୍ନା ନାହିଁ । ତା କଥାରେ ରଙ୍ଗ ନାହିଁ । ସୁଦର୍ଶନ ନିଜକୁ ବେଶି ଭୟ କରୁଛି । ସେ ସତେ କଅଣ ଅଥର୍ବ ? ସାତବର୍ଷ ହେଲା ସେ ସୁଦକ୍ଷିଣା ସାଙ୍ଗରେ ସଂଯୁକ୍ତ ଜୀବନ କଟାଇଲା । ସୁଦକ୍ଷିଣା ମାଆ ହୋଇ ପାରିଲା ନାହିଁ ? ମାଆ ହେବା ପାଇଁ ସୁଦକ୍ଷିଣାର କ୍ଷୋଭ ଓ ହା ହା କାରର ଧକ୍କା ସୁଦର୍ଶନ ବେଳେ ବେଳେ ସମ୍ଭାଳି ପାରେନା ।

ସୁଦର୍ଶନ ସୁଦକ୍ଷିଣାର ଦୁଃଖ ବୁଝେ । ସେ ଜାଣେ ତାର ଯନ୍ତ୍ରଣାର ମୂଳଆଁଡ଼େ ଯଥେଷ୍ଟ ଯୁକ୍ତି ରହିଛି । ତା ଦୁଃଖର ଗୁମ୍ଫା କଣରେ ଅନ୍ଧାରର କରାଟ ପେଟରେ ଯେଉଁ ଭୟାଳୁ ଭଅଁରଟି କୁହାଟି ଯାଉଛି, ତାହାର ହାହାକାରର ସ୍ୱର ସୁଦର୍ଶନର ମନ କଣ୍ଡରେ ପ୍ରତିଧ୍ୱନି ଦେଇଛି । ସୁଦକ୍ଷିଣାକୁ ସେ ବୁଝୁଛି ; କିନ୍ତୁ ନିଜ ପାଖରେ ସେ ଅବୁଝା ହୋଇ ପଡ଼ୁଛି । ସତେ କ'ଣ ତାର ପୁରୁଷତ୍ୱ ତାକୁ ଧୋକା ଦେଇଛି ? ଏପରି ଶଙ୍କାକୁ ମାନିନେବାକୁ ସୁଦର୍ଶନ ପ୍ରସ୍ତୁତ ହୋଇପାରେ ନାହିଁ । ସୁଦକ୍ଷିଣା ଅନେକ ଥର ଡାକ୍ତରୀ ପରୀକ୍ଷା ପାଇଁ କହିଛି । ଅନୁରୋଧର ନଇଁନତା ନେଇ କହିଛି । ଶେଷକୁ ନିର୍ଦ୍ଦେଶର ସ୍ୱରକୁ ଅନୁରୋଧର ଭାଷା ଦେଇ ବି କହିଛି । ଡାକ୍ତର କଥା ପଡ଼ିଲେ ସୁଦର୍ଶନ କେମିତି ପଛେଇ ଯାଏ । ଜାଣେ ସେ ଆବିଷ୍କୃତ ହୋଇଯିବ ଯେ ସେ ସନ୍ଦେହର ମଣିଷ ନୁହେଁ, ଦୋଷର ମଣିଷ । ସୁଦକ୍ଷିଣାକୁ ସେ ମୁହଁ ଟେକି ଦେଖି ପାରିବ ତ ? ତା ଦେହର ପ୍ରାପ୍ୟକୁ ସେ ମାଲିକ ହୋଇ ଆଦାୟ କରିବାକୁ ଜୁଲମ କରି ପାରିବ ତ ? ସେ ଭିକାରୀ ହୋଇଯିବ । ସୁଦକ୍ଷିଣା ତାକୁ ହାତ ଟେକି ଭିକ ଦେବ । ଅସହ୍ୟ ପରାଜୟର ଗନ୍ଧରେ ନିଃଶ୍ୱାସ ତାର ଅଟକି ଅଟକି ଯାଏ ।

ନିର୍ଦ୍ଦେଶମାନ୍ୟ ସୁଦର୍ଶନ ଓ ସୁଦର୍ଶନ ସମ୍ପ୍ରଦାୟର ପୁରୁଷ ଉପଦେଷ୍ଟାଙ୍କ ନିର୍ଦ୍ଦେଶ ଶୁଣି ଶୁଣି, ପୁରୁଷଙ୍କ ଜୁଲମ ସହି ସେମାନଙ୍କୁ ମାଲିକ ବୋଲି ସାବ୍ୟସ୍ତ କରି ନେଇଥିବା ନାରୀ ଉପକାରୀମାନଙ୍କ ଉପଦେଶ ମାନି ମାନି ସୁଦକ୍ଷିଣା ଶିବଙ୍କର ବେଲପତ୍ର ଗିଳିଛି, ମଙ୍ଗଳାଙ୍କ ସିନ୍ଦୂର ପିନ୍ଧିଛି, ଶାଳଗ୍ରାମଙ୍କ ପାଦୁକ ପାଇଛି । ତୀର୍ଥବ୍ରତ, ଓଷା ଉପବାସର ନିଷ୍ଠେଡକ ଶୁଂଘି ନିଜ ଭିତରୁ ଅବଶ୍ୱାର ଅବସାଦକୁ ଖରକି ଦେଇ ମାତାଲ ଭଳି ସୁଦର୍ଶନ ପାଖରେ ନିଜକୁ ଧରା ଦେଇଛି ଓ ସୁନ୍ଦର ସୁନ୍ଦର ଶିଶୁ ମୁହଁର ସ୍ୱପ୍ନ ଦେଖିଛି । ସମସ୍ତ ସ୍ୱପ୍ନକୁ ତାର ଅସ୍ୱୀକାର କରି ତାକୁ ବୁଝାଇଦେଇଛି ଯେ ସେ କେବଳ ସ୍ୱପ୍ନରେ ଖାଇଛି, ପେଟରେ ତାର ଭୋକ ଯେମିତି ଥିଲା ସେମିତି ଅଛି । ପ୍ରତି ବିଧିବିଧାନ ପରେ ସୁଦର୍ଶନ ମଧ୍ୟ ସାନ୍ତ୍ୱନା ନିଏ, ଏଥର ପୌରୁଷ ତାର ହୁଏତ ଜବାବ ଦେଇଛି । ସମସ୍ତ ଆଗ ପରି ପୁଣି ସ୍ପଷ୍ଟକର ହୁଏ, ସବୁ ଥର ପରି ସେ ହାରିଯାଇଛି ।

ଵତୃଷ୍ଣାର ଘୂର୍ଣ୍ଣ ସୁଦକ୍ଷିଣାକୁ କୋଶ କୋଶ ଖାଇ ଖାଇ ଗୃଲୁଥିଲା । ହୀନମନ୍ୟତା ଓ ଉପ୍ସର ଓଥରୀ ସୁଦର୍ଶନର ଗ୍ଲାନ ମହିରେ ଚଡ଼ିବସି ମନ ଉପରେ ତାର ନଖର ଗହ୍ୱରଆ ଗାର ପକାଉଥିଲା । ସୁଦର୍ଶନ ବୁଝୁଥିଲ ସୁଦକ୍ଷିଣାର ଆନୁଗତ୍ୟ ଭିତରୁ ଆନ୍ତରିକତା ପ୍ରାୟ ପୂରାପୂରି ଘୁଞ୍ଚି ଯାଇଛି । ନିଜକୁ ଲୁଚେଇବାର କାଗଜପଟି ପକାଇ ସେ ଗୃହିଣୀର ଅଭିନୟ କଲାବେଳେ ତା ଭିତରର ଫାଟ ସନ୍ଧର ଗନ୍ଧକୁ ସେ ଯେତେ ରୁନ୍ଧିବାକୁ ଚେଷ୍ଟାକଲେ ବି ତାର ପଚ୍ଛ ବାସ୍ନା ସୁଦର୍ଶନର ନାକରେ ବାଜୁଥିଲା । ପ୍ରଚ୍ଛନ୍ନ ଅବଜ୍ଞା, ଅବହେଳା, ଅଖାଡ଼ରର ଉତ୍ତେଜନାରେ ସୁଦର୍ଶନର ସ୍ୱାମୀର ଉତ୍ତାପ ତାକୁ ହିଁ କେବଳ ତତେଇ ତତେଇ ଉତ୍ତପ୍ତ କରୁଥିଲା । ସେ ତାର ବିସ୍ଫୋରଣକୁ ସୁଦକ୍ଷିଣା ଉପରେ ଖାଲସ କରିବାକୁ ସାହସ କରିପାରୁନଥିଲା । ବେଳେ ବେଳେ ସେ ଭାବୁଥିଲା, ସୁଦକ୍ଷିଣାକୁ ମୁକ୍ତି ଦେଇଦେଲେ କେମିତି ହୁଅନ୍ତା ? ସେ ଯେତେବେଳେ ତା ମନରେ ରଙ୍ଗର ଗାର ଦେଇ ନପାରିଲା, ଅନ୍ୟ କାଗଜରେ ଡୁଳୀଡଳକୁ ତାକୁ ଯିବାକୁ ସ୍ୱାଧୀନତା ଦେଲେ, କ୍ଷତି କଣ ? ସୁଦକ୍ଷିଣାକୁ ହରାଇବାର ଚିନ୍ତାରେ ସେ ଅସହାୟ ହୋଇ ପଡ଼ୁଥିଲା । ସେମିତିକା ସିଦ୍ଧାନ୍ତ ନେବାକୁ ସେ ଅତ୍ୟନ୍ତ କାତର ହୋଇ ସାମର୍ଥ୍ୟ ହରାଇ ବସୁଥିଲା ।

ସୁଦକ୍ଷିଣାର ଭିତରର ଅସନ୍ତୋଷର ସୈତାନ ବାହାରକୁ ଆସି ଉତ୍ପାତ ନ କରିବାକୁ ସୁଦର୍ଶନ ଯେତେ ହୁସିଆର ହେଲେ ବି, ଗ୍ରେଟ ଗ୍ରେଟ ଗଳା ବାଟ ଦେଇ ବେଳେ ବେଳେ ସୁଦକ୍ଷିଣାର ଅସଲ ସ୍ୱରୂପ ପିଚ୍ଛକ ପଡ଼ୁଥିଲା । ସୁଦକ୍ଷିଣା ଗୋଟାଏ ଭୁଆ ବିରାଡ଼ି ପାଳିଥିଲା ଓ ସୁଦର୍ଶନଠୁଁ ତାକୁ ସେ ଯଥେଷ୍ଟ ବେଶି ଭଲପାଏ ବୋଲି ସୁଦର୍ଶନର ଧାରଣା ଥିଲା । ବିରାଡ଼ିର ଖାଇବା, ପିଇବା, ଶୋଇବା ଅନ୍ୟାନ୍ୟ ସୁବିଧା ଅସୁବିଧା ପ୍ରତି ସୁଦକ୍ଷିଣାର ଯେତେ ନଜର ଥିଲା, ସୁଦର୍ଶନର ଭଲମନ୍ଦ ଲାଗି ତାର ସେତିକ ଅନୁଭବ ନାହିଁ ବୋଲି ସେ ଭାବୁଥିଲା । ସୁଦର୍ଶନ ବିରାଡ଼ିଟାକୁ ତାର ପ୍ରତିଦ୍ୱନ୍ଦୀ ଭାବି ତାକୁ ସହି ପାରୁ ନଥିଲା । ଆଉ ଏଇ ଭୁଆଟା ନିର୍ଭୟରେ ସବୁ ଅବ୍ୟାପାର କରି ଗୃଲିଥିଲା । ମାଛ ଭାଜିବା ଆଗରୁ ଅଧିକାଂଶ ବେଳେ କଟା ମାଛକୁ ସେ ନିର୍ଦ୍ୱନ୍ଦରେ ଗର୍ଭସ୍ଥ କରିପାରୁଥିଲା । ଠାକୁର ଘରେ ହୋମ ପାଇଁ ରଖାଯାଇଥିବା ବାଳକୁ ଖାଉ଼ା

ଫେରିବାର ଉପଯୁକ୍ତ ଜାଗା ବୋଲି ସେ ବାଛି ନେଇଥିଲି । ଖଣ୍ଡିଆ ଝିଟିପିଟି, ଅଧାଖିଆ ଅସରପାର ଦାଗରେ ତାର ସବୁ ବିଛଣା ଚଦର ପ୍ରାୟ ନାସନା ହୋଇସାରିଥିଲି । ଟେବୁଲ ଲେମ୍ପ ଆଗରେ ଉଡ଼ୁଥିବା ଝିଣ୍ଟିକାଙ୍କୁ ଶିକାର କରିବାକୁ ଯାଇଁ ସୁଦର୍ଶନର ପେନ୍‌ଷ୍ଟାଣ୍ଡ, ଏସଟ୍ରେକୁ ନର୍ବିଗ୍ଭରରେ ଭାଙ୍ଗିପାରୁଥିଲି । ଭୂଆଟାର ଏ ପ୍ରକାର ଔଦ୍ଧତ୍ୟକୁ ସୁଦକ୍ଷିଣା କେବଳ ପ୍ରଶ୍ରୟ ଦେଉନଥିଲି, ଉପଭୋଗ କରୁଥିଲି ବୋଧହୁଏ । ସୁଦର୍ଶନ ତାର ସହିବାର ସାମର୍ଥ୍ୟକୁ ପ୍ରାୟ ହରାଇବା ଉପରକୁ ଗ୍ଭଲି ଯାଉଥିଲି, ଯେତେବେଳେ ସୁଦକ୍ଷିଣା ବିରାଡ଼ିଟାକୁ କୋଳରେ ଧରାଇ ତା ଆଡ଼କୁ ମୁହଁକରି ସୁଦର୍ଶନ ସାଙ୍ଗରେ ଏକା ବିଛଣାରେ ଶୋଉଥିଲି ।

ଥରେ ଗାଁର ଗୋଟେ ବାରବୁଲା ଭୂଆ ଗୋଟାଏ ମାଈ ବିଲେଇକୁ ଗୋଡ଼ାଇ ଗୋଡ଼ାଇ ସୁଦର୍ଶନ ଘରକୁ ପଶି ଆସିଲି । ସୁଦକ୍ଷିଣାର ଭୂଆ ପୌରୁଷର ରେ ରେ କାର କରି ତା ଉପରକୁ ଝାମ୍ପ ମାରିଲା ଓ ବାହାରର ଭୂଆକୁ ରକ୍ତାକ୍ତ କରି ମାଈ ବିଲେଇଟିକି ନିଜର ଅକ୍ତିଆରକୁ ନେଇ ଆସିଲି । ଦୁଇ ଭୂଆଙ୍କର ଯୁଦ୍ଧକ୍ଷେତ୍ର ଖଟ , ବହିସେଲ୍‌ଫ, ଭାତହାଣ୍ଡି ତଳ, ଟେବୁଲ ଉପର ଅନେକ ଆଡ଼େ ବ୍ୟାପି ଯାଇଥିଲି । ଏ ଲଢ଼େଇରେ ଆଉ ଯାହା ଧ୍ୱଂସ ପାଇଲି ତ ପାଇଲି ସୁଦର୍ଶନର ଅତି ପ୍ରିୟ ଫୁଲଦାନୀଟି ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିଲି । ଏଇ ଫୁଲଦାନୀଟି ପ୍ରଥମ ବାସର ରାତିରେ ସୁଦର୍ଶନର ସୁଦକ୍ଷିଣାକୁ ଥିଲି ପ୍ରୀତିର ଉପହାର । ଫୁଲଦାନୀଟି ଆକାରରେ ଥିଲି ଗୋଟିଏ ମାଛ ଆଖିପରି ଓ ତା ଉପରେ ଥିଲି ସତ ଧଳଫୁଟା ଫୁଲ ପରି ପ୍ଲାଷ୍ଟିକର ଗ୍ଭେଟିଆ ମାଳ କଇଁଟିଏ । ଫୁଲଦାନୀଟି ହାତରେ ଧରି ସେଦିନ ସୁଦକ୍ଷିଣା ଅଳ୍ପ ହସିଥିଲି । ସେଇ ହସଦେଇ ସେଦିନ ସେ କହିଲି···ଏଣିକି ସୁଦର୍ଶନର ଆଖିଦେଇ ସେ ସବୁ ଦେଖୁଛି, କାରଣ ତାର ଦେହ ଓ ମନ ସୁଦର୍ଶନର ଦେହ ମନରେ ମିଳାଇ ଯାଇଛି, ତେଣୁ ଯାହାକୁ ସେ ସୁନ୍ଦର ବୋଲି ଆଣିଛି, ତା ପାଇଁ ସେ ନିଶ୍ଚୟ ସୁନ୍ଦର । ସୁଦର୍ଶନର ମନ ଝାଉଁଳି ପଡ଼େ । ସେ କଣ ସେପରି ଆତ୍ମଦାନକୁ ମର୍ଯ୍ୟାଦା ଦେଇଛି ? ସମ୍ମାନ ଦେଇ ମହାନ କରି ପାରିଛି ? ସୁଦକ୍ଷିଣାର ସେ ଦିନର ସେ ହସକୁ ସେ ତ ହରାଇ ବସିଛି । ସେ ହସର ସନ୍ତକ ଫୁଲଦାନୀଟି ଭାଙ୍ଗିଯାଇ ଥିବାରୁ

ସୁଦର୍ଶନ ସେଦିନ ନିଜକୁ ଆୟତ୍ତରେ ରଖି ପାରିନଥିଲା । ତାର ବେଶୀ ରାଗ ବଢ଼ିଯାଇଥିଲା ଯେ ସୁଦକ୍ଷିଣା ସେ ଲଢ଼ାଇକୁ ଠିଆହୋଇ ଦେଖୁଥିଲା ଅଥଚ ଝଗଡ଼ା ଦୁଇଟିକୁ ଅଡାଇ ଦେଲାନି ତା ଫୁଲଦାନିଟି ଭାଙ୍ଗି-ଗଲା । ସୁଦର୍ଶନର ସ୍ୱାମୀତ୍ୱ ଏପରି ପରିସ୍ଥିତିକୁ ବରଦାସ୍ତ କରିପାରିଲା ନାହିଁ । ସେ ଭୂଆଁଟାକୁ ଗୋଡ଼ାଇ ଗୋଡ଼ାଇ ବାହାରେଇବାକୁ ଲାଗିଲା । ସୁଦକ୍ଷିଣା ଆଖିରୁ ନିଆଁ ହୁଳା ଛୁଟୁଥିଲା । ସେ ନିଜକୁ ଖୋଲିଦେଇ ସେଦିନ ସୁଦର୍ଶନକୁ ତାର ବହୁ ଦିନର ଅକୁହା ଅତି କଡ଼ା କଡ଼ା କଥା କହି ଆଘାତ ଦେଇଥିଲା । ଶେଷରେ କହିଥିଲା ଯେ ଗଛର ଫୁଲ ବୋଲି ପ୍ଲାଷ୍ଟିକ ଫୁଲକୁ ଦିନେ ସେ ନିଜର କରିନେଇଥିଲା, ଫୁଲଟା ପ୍ଲାଷ୍ଟିକର ମଲାଫୁଲଟାଏ ବୋଲି ଜାଣିପାରିଲା ପରେ ଫୁଲଦାନିଟା ଭାଙ୍ଗିଯାଇଛି ତ ଠିକ୍ ହୋଇଛି ।

ଏ ଝଗଡ଼ା ଦୁର୍ଘଟଣାର କେତେ ମାସ ପରେ ଗୋଟାଏ ଅପବାଦ ଗୁଜିଆଡ଼େ ମାଡ଼ିଗଲା । ତାର ରୂପଟା ଏପରି ଥିଲା—ସୁଦର୍ଶନର ପାଖ ପଡ଼ିଶା ଘରେ ଜଣେ ସରକାରୀ ଚାକିରିଆ ଘରଭଡ଼ା ନେଇ ରହୁଥିଲେ । ତାଙ୍କର ଗୋଟାଏ ବୟସ୍କା ପାଠ ପଢ଼ୁଆ ଭଉଣୀ ଥିଲା । ତାର ପାପ ଗର୍ଭ ହୋଇଥିଲା ଯେ ସେ କଟକ ଯାଇ ଭଙ୍ଗାଇ ଆଣିଛି । ଲୋକଙ୍କଟା ମାନୁଛି ଯେ ତାର ଓ ସୁଦର୍ଶନର ସମ୍ପର୍କରୁ ତାର ଅସୁବିଧା ହୋଇଥିଲା ।

ସମସ୍ତେ ଛି ଛି କରୁଛନ୍ତି । ସୁଦକ୍ଷିଣା ବୋଧହୁଏ ଘୃଣାରେ ତାକୁ ପ୍ରତ୍ୟାଖ୍ୟାନ କରିବାକୁ ସାବ୍ୟସ୍ତ କରିସାରିଥିବ । ଏ ସବୁ ସତ୍ତ୍ୱେ ଏ ବଦନାମ ସୁଦର୍ଶନକୁ କେମିତି ମିଠା ମିଠା ଲାଗୁଥିଲା । ଯେମିତି ରାଗ.ଡ ବାନ୍ଧିଲାବେଳେ ତା ଉପରେ ଚଢ଼ିଗଲେ କାଟେ ସତ କିନ୍ତୁ ଟା ଆରାମ ବି ମିଳେ । ସୁଦକ୍ଷିଣାର ସେ ନିନ୍ଦିତ ଚନ୍ଦ୍ରସେଣା । ତାର ବାଦିପିଡ଼ା ପ୍ରବୃତ୍ତିକୁ ଠିକଏ ଉତ୍ତର ଦେବାକୁ ସେ ଝିଅଟା ସାଙ୍ଗରେ ଅବଶ୍ୟ କିଛିଟା ଇଚ୍ଛାକୃତ ମିଳାମିଶା କରିଥିଲା । ସେ ମଧ୍ୟ ଜାଣିଥିଲା ଯେ ସେ ଟୋକୀଟା ଗାଁର ବହୁ କଲେଜ ଟୋକାଙ୍କ ସାଙ୍ଗରେ ହେଁ ହେଁ ହେଇ ବୁଲିବାକୁ ତାର ପରିବାରର ଲୋକେ ତାକୁ ସୀମା ବାହାରର ପ୍ରଶ୍ରୟ ଦେଇଥିଲେ ।

ତଥାପି ସୁଦର୍ଶନ ଭାବୁଥିଲ, ଏ ଅପବାଦ ଘାର୍ଞ୍ଜାବା ହେଉ । ଏ ସମ୍ବାଦ ସତ୍ୟ ହେଉ ।

ସେ ହୁଏତ ସୁଦକ୍ଷିଣାକୁ ସାଙ୍ଗରେ ନେଇ ଡାକ୍ତରଖାନା ଯିବାକୁ ତାକୁ ପ୍ରସ୍ତାବ ଦେଇପାରେ ।



# ଚରୈବେତି

ହିମାଳୟ ହରିଚନ୍ଦନ ତାଙ୍କ ନାତି କମ୍ବୁଜ କସ୍‌ମସ୍‌ର ଖେଳ ପାଟ୍ଟିଆକୁ ଖେଳେଇ ଖେଳେଇ ଦେଖୁଥିଲେ । ଆଜକୁ ଆଠବର୍ଷ ତଳେ ସେ ଖେଳ ପାଟ୍ଟିଆକୁ କସ୍‌ମସ୍ ତାଙ୍କୁ ଲୁଚେଇ ରଖିବାର ଦାୟିତ୍ୱଟା ଦେଇଥିଲା । ସେତେବେଳେ ସେ ତା' ଖେଳ ପାଟ୍ଟିଆକୁ ନିଜ ଶୋଇବା ଘରେ ତା' ଉପରେ ଏଣୁ ତେଣୁ ଜିନିଷ ଗଦି ଲୁଚାଇ ରଖୁଥିଲେ । ତା' ମମିର ଅଜଣାରେ କସ୍‌ମସ୍ ସେ ଖେଳ ପାଟ୍ଟିଆକୁ ନେଇ ବେଳେ ବେଳେ ଖେଳୁଥିଲା । ପ୍ରାୟ କସ୍‌ମସ୍‌ର ମମି ହିମାଳୟଙ୍କ ଶୋଇବା ଘରକୁ ଆସୁ ନ ଥିଲେ । ଦରକାର ପଡ଼ିଲେ ଆସିଯିବାର ସମ୍ଭାବନା ଯେ ନ ଥିଲା, ତା' ନୁହେଁ । ହିମାଳୟଙ୍କ ଗୃହଚାଳନଗତ ତ୍ରୁଟି କସ୍‌ମସ୍‌ର ମମିଙ୍କ ଇଙ୍ଗାକୁ ଠକର ଦେଲେ ଅନ୍ତତଃ ଏକ ଶାଳୀନ ଚେତାବନୀ ଦେବାକୁ କେତେ-ବେଳେ କେମିତି ସେ ତାଙ୍କ ଶୋଇବା ଘରକୁ ବଜେ ହୋଇ ଯାଉଥିଲେ । କସ୍‌ମସ୍ ଆଜିକୁ ଆଠବର୍ଷ ହେଲା ତା' ଡାଡ଼ି ମମିଙ୍କ ସାଙ୍ଗରେ ଫରେନ୍‌ସରେ ଅଛି । ଯା' ଭିତରେ ଜେଜେଙ୍କ ପାଖକୁ ପହିଲୁ ପହିଲୁ ଅନେକ କଥା ଲେଖି ଲେଖି ଏବେ ଧିମେଇ ପଡ଼ିଛି । ହିମାଳୟ ଜାଣି ପାରନ୍ତି ନି, କସ୍‌ମସ୍‌ର ବ୍ୟସ୍ତତା ବଢ଼ି ଯାଇଛି; ନା' ସେ ଲେଖିବାକୁ ଆଉ ଇଚ୍ଛା କରୁନି । ସେଠି ପିଲାଏ ପ୍ରଥମେ ଭେଟିଲେ କେମିତି 'ହାୟ' କହନ୍ତି ଠାରୁ ଆରମ୍ଭ କରି ତା' ସାଙ୍ଗରେ ପଢ଼ୁଥିବା ମାର୍ଗାରେଟ କେମିତି ତାକୁ ରୋମାନ୍‌ସ ଶବ୍ଦର ମାନେ ବୁଝାଉଛି, ପର୍ଯ୍ୟନ୍ତ ସେ ଅନେକ କଥା ଲେଖିଛି । କେବଳ ଗଲା ଥରର ପ୍ରଥମ ଚିଠିରେ ସେ ତା' ଖେଳ ପାଟ୍ଟିଆ କଥା ଲେଖିଥିଲା । ଆଉ ଲେଖିଥିଲା ଯେ ମମି ଡାଡ଼ିଙ୍କୁ ଲୁଚେଇ ସେ ଚିଠି ଲେଖିଛି । ଦି'ଚାରି ଧାଡ଼ିର ଚିଠି । ଚାରିବର୍ଷ ପିଲାର ଅକ୍ଷର ଓ ଶବ୍ଦ ଜ୍ଞାନର ଚିଠି । ଆଉ ସେ ଚିଠି ତାଙ୍କ ନାତି କସ୍‌ମସ୍‌ର ତା' ଜେଜେ ପାଖକୁ ଚିଠି । ଆଜିଯାଏଁ ହିମାଳୟ ସେ ଚିଠି ଖଣ୍ଡିକୁ ତାଙ୍କ ଡାଇରୀର ସେ ଚିଠି ପାଇଥିବା ତାରିଖରେ ଅଠାମାରି ରଖିଛନ୍ତି ।

ହିମାଳୟ ହରିଚନ୍ଦନ କସ୍‌ମସ୍‌ର ଖେଳ ପାଡ଼ୁଆରୁ ଗୋଟି ଗୋଟି ଜିନିଷ କାଢ଼ି ପାଡ଼ୁଆଟାକୁ ଝାଡ଼ିଝୁଡ଼ି ରଖୁଥିଲେ । କେତେଟା ଅତି ଶୁଖିଲା ନଡ଼ିଆ ଗୋଟିମା, କେତେଖଣ୍ଡ ସିଗାରେଟ ଜରି କାଗଜ, ଖଣ୍ଡେ ଖଣ୍ଡିଆ ଛୁଞ୍ଚି ଓ ସୂତା, ପୁରୁଣା ବେଟେରୀ, ବୋତଲ ଠିପି ପ୍ରଭୃତି ଆଉ ଅଳ୍ପ କେତେଟା ଜିନିଷ । ତା'ର ଅଧୁନାର ପ୍ରାକ୍ ଅବସ୍ଥିବ ।

ହିମାଳୟ ହରିଚନ୍ଦନ ତାଙ୍କ ନାତି କମ୍ରେଡ଼ କସ୍‌ମସ୍‌ର ଖେଳ ପାଡ଼ୁଆକୁ ଝାଡ଼ିଝୁଡ଼ି ସଜାଡ଼ି ରଖୁଥିଲେ । କସ୍‌ମସ୍‌ର ନାଆଁ ଶେଷରୁ ହରିଚନ୍ଦନ ସାଙ୍ଗିଆ ତା' ଡାଡ଼ି ମନି ବାତିଲ କରି ଦେଇଛନ୍ତି । ଏଇ ସାଙ୍ଗିଆମାଙ୍ଗିଆ, ଜାତିପତିର ଗର୍ହିତ ପରମ୍ପରା ବହୁ ଅବ୍ୟାପାରର ଇତିହାସ ଲେଖିଛି । ଗୋତ୍ରପ୍ରବରର ଦ୍ୱାହି, ମୌଳିକତାର ମୂଲ୍ୟ, ଗୃହଘର ପୁଅ ଗୃହ, ଏ ସବୁ ଗୁଡ଼ାକ ଶ୍ରେଣୀମାନଙ୍କ ସ୍ୱାର୍ଥ ସଂରକ୍ଷଣର ଘୃଣ୍ୟ ସ୍ୱରୂପ । ଅନ୍ୟ ଉପରେ ଅନ୍ୟାୟ କରିବାର ଅସଲ ଷଡଯନ୍ତ୍ର । ହିମାଳୟଙ୍କ ପୁଅ ବୋହୂ ଆବଶ୍ୟକତା ନ ଥିଲେ ମଧ୍ୟ ଉପରେ ପଡ଼ି ବେଳେ ବେଳେ ଇମିତିକା ଯୁକ୍ତି ତାଙ୍କ ଉପରେ ଲଦି ଦେଉଥିଲେ । ହିମାଳୟ ହରିଚନ୍ଦନ ଆଜିର ପରିବର୍ତ୍ତିତ ଜେନେରେସନ୍ ଗେପ୍ ସମ୍ପର୍କରେ କିଛି କେବେ ମନ୍ତବ୍ୟ ଦେଇନାହାନ୍ତି । ସେ ତାଙ୍କ ଜେଜେବାପା ଓ ବାପାଙ୍କ ଭିତରେ ଥିବା ରୁଚିର ଫାଙ୍କକୁ ଛୁଆ ହୋଇ ଦେଖିଥିଲେ । ଆଜି ବଡ଼ ହୋଇ ମାପି ବସିଛନ୍ତି । ତାଙ୍କ ଜେଜେବାପା ଓ ବାପାଙ୍କ ମଝିରେ ନାମମାତ୍ର ନାଳ ଖଣ୍ଡିକ ଥିଲା । ତାଙ୍କ ଜେଜେ ଓ ବାପା ଏଇ ଖାଇର ଦୁଇ ପାଖରେ ଠିଆ ହୋଇଥିଲେ ବି ହାତ ବଢ଼େଇ ଦୁଇଜଣ ଛୁଆଛୁଇଁ ହୋଇ ପାରୁଥିଲେ । ଆଉ ଆଜି ସେ ଓ ତାଙ୍କ ପୁଅଙ୍କ ଭିତରେ ସେ ଦେଖୁଛନ୍ତି ଭୂମଧ୍ୟସାଗର, ତାଙ୍କ ପୁଅ ଓ ତା' ପୁଅ ମଝିରେ ଆଟଲାଣ୍ଟିକ ମହାସାଗର । ତାଙ୍କ ନାତି ଓ ତା' ପୁଅର ବ୍ୟବଧାନର ବ୍ୟାପ୍ତି କେତେ ବିରାଟ ହେବ, ସେ ଭାବି ପାରନ୍ତିନି । ତା' ପର ପରର ଜେନେରେସନ୍‌ର ଦୂରତ୍ୱ ହୁଏତ ମହାକାଶର ଆଲୋକ ବର୍ଷରେ ମପାଯିବ । ତେଣୁ ଜେନେରେସନ୍ ଜେନେରେସନ୍ ଭିତରେ ଏଇ ଦୂରେଇ ଦୂରେଇ ଯିବା ବ୍ୟାଧି ଉପରେ ସେ ଅଯଥା ନିଦାନ ଖୋଜନ୍ତି ନାହିଁ । ସେ କେବଳ ମନେ ମନେ ବେଳେ ବେଳେ ଉଚ୍ଚାରଣ କରନ୍ତି—ଚରୈବେତି, ଚରୈବେତି । ଚାଲିଯିବା ହିଁ ଜୀବନ ।

ଜୀବନ୍‌ଗତ ବାପଠୁଁ ହୋନେହାର୍ ପୁଅ ଜୀବନ ରେସ୍‌ରେ ଯଥେଷ୍ଟ ଅଧିକ ଦୌଡ଼ି ପାରୁଛି । କୃତାନି ପୂର୍ବୈଃ ଅକୃତାନି ପୂର୍ବୈଃ । ପୂର୍ବପୁରୁଷ ଯାହା ନ କରିଛି, ପରପୁରୁଷ ତା' କରି ଦେଖାଏ । ତେଣୁ ମଝିରେ ବ୍ୟବଧାନଟା ଆପେ ଆପେ ଅନେକ ବେଶି ହୋଇ ପଡ଼ିଛି । ତାଙ୍କ ଜେଜେ ଓ ତାଙ୍କ ବାପାଙ୍କ ଭିତରେ ଥିବା ବ୍ୟବଧାନର ବ୍ୟବଚ୍ଛେଦ କରି ସେ ଦେଖିଛନ୍ତି, ସେଠି ନୂଆରେ ପୁରୁଣାର ଚିନ୍ତା ଓ ରୁଚିର ଅନୁବର୍ତ୍ତନ ଥିଲା । କିନ୍ତୁ ସେ ଓ ତାଙ୍କ ପୁଅ ଭିତରେ ମୂଳପୋଛ ପରିବର୍ତ୍ତନର ଭୟଙ୍କରତା ଅନୁଭବ କରି ସେ ବେଳେ ବେଳେ ଭୀତ ହୋଇ ପଡ଼ନ୍ତି ବରଂ ନିଜକୁ ଚେଷ୍ଟା କରି ନିଜକୁ ନିଜର ଖୋଳପା ଭିତରେ ରଖିବାକୁ ନିରାପଦ ମଣନ୍ତି ।

ନାତି କସ୍‌ମସ୍‌କୁ ପ୍ରାୟ ସେ ପ୍ରତିଦିନ ଗାଧୋଇ ଦେଉଥିଲେ । ଚାକିରିରୁ ଅବସର ନେଲାପରେ ଏମିତି କେତେଟା ଛୋଟ ଛୋଟ କାମର ବରାଦକୁ ସେ ଆଦରରେ କରନ୍ତି । ସେଥିରେ କିଛି ଆନନ୍ଦ ଓ କିଛିଟା ଆରାମ ବି ଥାଏ । ଏବେ ସେ ଘରଣୀଙ୍କ ବାରଣ ସତ୍ତ୍ୱେ ବି ଅଧିକାଂଶ ବେଳେ ପରିବା କାଟି ବସନ୍ତି । ହଁ, କସ୍‌ମସ୍ ଚାରିବର୍ଷର ଛୁଆଟା । ଗାଧୋଇଲା ବେଳେ ଚଡ଼ି ଖୋଲିବାକୁ ନାରାଜ । ତାଙ୍କର ମନେ ପଡ଼ିଯାଏ ତାଙ୍କ ପିଲାବେଳର କଥା । ସ୍କୁଲରୁ ଫେରି ସେ ଲଙ୍ଗଳା ହୋଇ ପିନ୍ଧିଥିବା ଛୋଟ ପାଞ୍ଚହାତି ଧୋତି ଖଣ୍ଡିକ ବାହାର ଅଲଗୁଣିକୁ ଫୋପାଡ଼ି ଦିଅନ୍ତି । ଛୁଆଁ ଛିଆ ଲୁଗା । ମାଆ ପରେ ଧୋଇ ଦେବ । ତାପରେ ସେଇମିତି ଲଙ୍ଗଳା ହୋଇ ପିଢ଼ାପକାଇ ପଖାଳ କଂସା ପାଖରେ ବସି ପଡ଼ୁଥିଲେ । ଏବେକାଳେ ଅଭିଜାତ ପରିବାରର ମାଆମାନେ ଛୋଟ ଛୋଟ ଝିଅମାନଙ୍କୁ ବାହାରକୁ ବୁଲେଇ ନେଲା ବେଳେ ଝିଅଙ୍କ ଶୋଭା ବର୍ଦ୍ଧନ ପାଇଁ ତାଙ୍କ ଫ୍ରକତଳେ ଫଲସ ବ୍ରେଷ୍ଟ ଖଞ୍ଜି ଦେଉଛନ୍ତି ବୋଲି, ସେ ଶୁଣୁଛନ୍ତି । ଦିନେ ଜଣେ ପଦସ୍ଥ ଦର୍ମାଚାରୀଙ୍କ ଝିଅ ତାଙ୍କ ପାଖକୁ ଇଂରେଜୀ ଗ୍ରାମାର ବୁଝିବାକୁ ଆସିଥିଲା । ହାଇସ୍କୁଲ ଷ୍ଟେଜର ଝିଅ । ଏକ ଛୋଟ ସ୍କାର୍ଟ ଉପରେ ପିନ୍ଧିଛି ଖଣ୍ଡେ ଟାଇଟ୍ ଗେଞ୍ଜି । ଓଭର ଡେଭେଲପଡ ବାଆଁ ପାଖ ସ୍ତନ ଉପରେ ଅତି ପ୍ରମିନେଣ୍ଟ ହୋଇ ଲେଖା ହୋଇଛି—'ଲଭସ୍ପୋର' । ହୁଏତ ତା

ମାଆ ସନ୍ତରଣ ସପିଙ୍ଗ୍ କରିବାକୁ ଯାଇଥିବ ଏବଂ ଝିଅର ପସନ୍ଦକୁ ସ୍ୱୀକାର କରି ବା ନିଜେ ଚଏସ୍ କରି ଗେଞ୍ଜିଟି କିଣି ଦେଉଥିବ । କେଉଁ ସହରରେ କାଳେ ଦର୍ଶକମାନଙ୍କୁ ମଞ୍ଚ ଉପରୁ ସେକ୍ସୁଏଲ ଇଣ୍ଟରକୋର୍ସ ଦେଖାଇ ଦିଆଯାଉଛି । ପୁଣି ଆଉ କେଉଁ ଦେଶର ବେଶ୍ୟାବୃତ୍ତିକୁ ଏକ ସମ୍ମାନାସ୍ପଦ ବ୍ୟବସାୟ ରୂପେ ଗ୍ରହଣ କରି ସେଠିକା ସରକାର ସେ ବ୍ୟବସାୟ ଉପରେ କର ବସାଇଛନ୍ତି । ଆମର ଡ୍ୟାଡ଼ି ମମିମାନେ ଲୁଚି ଲୁଚି ବ୍ଲୁ ପିକ୍‌ଚର ଦେଖିବା ପର୍ଯ୍ୟନ୍ତ ପ୍ରାୟ ଆଗେଇଛନ୍ତି । ନାଗ୍ନ ସେକ୍‌ସ ଫ୍ରି ଯୁଗରୁ ଆସି ଆସି ସପ୍ତ ଅନୁସୂୟା ହେଉଥିଲି । ଇତିହାସ ଓଲଟେ ବୋଲି କହନ୍ତି । ଚରୈବେତ, ଚରୈବେତ ।

ଦିନେ କସ୍‌ମସ୍ ଆସି ତାଙ୍କ ପାଖ କାନ୍ଥକୁ ଆଉଜିକି ଠିଆ ହେଲା । ମୁହଁରୁ ଆହ୍ଲାଦର ଆଭା ଉଭେଇ ଯାଇଛି । ତା ଡ୍ୟାଡ଼ି ମମି ଦ୍ୱାରା ଅତି ସଂରକ୍ଷିତ ତା ମନର ବାଉଁଶକୁ କଣା କରି କିଛି ଗୋଟାଏ କଳ୍ପନାର ଭଅଁର ପଶିଯାଇଛି । କସ୍‌ମସ୍‌ର ଗୋରା ଗୋରା ଗାଲ ଲାଲେଇ ଗଲା । ତା ଓଠ ଥରି ଉଠିଲା । ସେ ତା ଅଭିମାନଯୁକ୍ତ ଅସନ୍ତୋଷର ବିବୃତି ଦେଲା । କଥାଟା କ'ଣ କି, ଦାଣ୍ଡରେ ମକରା, ମୁ କୁତା, ମହନ , ହେରିକା ନଡ଼ିଆ ଗୋଟମାରେ ଖଡ଼ିକା ଖୋଞ୍ଚି ବଛିଆ ରଥଟେ କରିଥିଲେ । ଖଡ଼ିକାରେ କନିଅର ଫୁଲ ଗଳାଇ ରଥକୁ ମଣ୍ଡାଇ ଦାଣ୍ଡରେ ହରିବୋଲ ପକାଇ ରଥଯାତ୍ରା କରୁଥିଲେ । ସେ ପିଣ୍ଡାରେ ଠିଆ ହୋଇ ଦେଖୁଥିଲା । ତାଙ୍କ ସାଙ୍ଗରେ ମିଶି ହରିବୋଲ ପକାଇ ନାଚିବାକୁ ତାର ଭାରି ଇଚ୍ଛା ହେଉଥିଲା । ମମି ଡ଼ରରେ ସେ ତଳକୁ ଓହ୍ଲାଉ ନ ଥିଲା । ହଠାତ୍ ମମି ଆସି ତା କାନ ଧରି ନେଇ ଆସିଲା । ଆଉ ତମତମ ହୋଇ କହିଲା କଣନା ବାଜେ ପିଲାଙ୍କ ସାଙ୍ଗରେ ମିଶି ଫାଲତୁ କଥା ଶିଖିବା ତାର ବିଲକୁଲ ଦରକାର ନାହିଁ । ତା'ପରେ ଜେଜେ ପିଠିରେ ପଶୁନାଉ ହୋଇ ଗେହ୍ଲେଇ ଗେହ୍ଲେଇ ଅଳି କରୁଥିଲା ଯେ ତା ପାଇଁ ସେ ଗୋଟେ ରଥ କରି ଦେବେ । ମମି କାଲି ଡ୍ୟାଡ଼ିଙ୍କ ସାଙ୍ଗରେ ଖରାବେଳେ କେଉଁ କ୍ଲବ ଆଡ଼େ କ ମିଟିଂ ପାଇଁ ଯିବ ବୋଲି କହୁଥିଲା । ସେତିକିବେଳେ ସେ ଚଟାଚଟ ଗୋଟେ ରଥ କରି ଦେବେ । ହଁ, କନିଅର ଫୁଲ ଅଲବତ୍ ଆଣି ଦେବେ । ସେ ରଥକୁ ସଜାଇ ଘରସାରା ଟାଣିବ । ତାପରେ ଟିକିଏ ଗୁମ୍ ଖାଇ ପ୍ରାୟ ହୁକୁମ

ଦୋବା ଭଙ୍ଗୀରେ ତାଙ୍କୁ ସେ କହିଥିଲା ଯେ ଟେବୁଲ ଉପରେ ତା ଟେଲିସକୋପଟା ଅଛି, ସେ କାଢ଼ି ଦେବେ । ତା ହାତ ପାଉନି । ହଁ, ମମିର ମୁଣ୍ଡଶୁଖା ଫେନ୍‌ର ପ୍ଲଗ୍‌ଟା ଦେଇ ଦେବେ । ସେ ବେଲୁନରେ ଗରମ ପବନ ପୂରାଇ ଉପରକୁ ଛାଡ଼ିବ । ତା ଡାଡ଼ିମମିର ଏପ୍ରକାର ଖେଳ ଖେଳିବାକୁ ନିର୍ଦ୍ଦେଶ ଥାଏ । ସେଦିନ ସେ କସ୍‌ମସ୍ ଆଡ଼କୁ କିଛି ସମୟ ଚୁହିଁ ରହିଥିଲେ । ଅତୀତର ମଧୁର ସତ୍ତାକୁ ବର୍ତ୍ତମାନ ଭିତରୁ ଧକ୍‌କା ଦେଇ ନିକାଶି ଦିଆଯାଉଛି । ଚରୈବେତ, ଚରୈବେତ । ହଁ, ବିନାଶରୁ ବିକାଶ ବିକାଶରୁ ବିନାଶ ।

ହିମାଳୟ ଟେଲିସକୋପ କାଢ଼ିଦେବାକୁ କି ହେଆର ଡ୍ରାଇଅରର ପ୍ଲଗ ଗେଞ୍ଜିବାକୁ ଆଗେଇ ଗଲେ ନାହିଁ । ସେ ବୋହୂଙ୍କର ବେଡ଼ରୁମକୁ ଯାଆନ୍ତି ନାହିଁ । ହୁଏତ ଜନସ ପଦରେ ଲଗିଲେ ସେମାନଙ୍କର ରୁଚି ବ୍ୟାହତ ହୋଇପାରେ । ପ୍ରଥମେ ପ୍ରଥମେ ସେମାନଙ୍କ ଭିତରେ ମରିବ ଅସନ୍ତୋଷ ଉର୍ଜ୍ଜି ମାରିବ । ହୁଏତ ଶେଷକୁ ଅସନ୍ତୋଷଟା ମୃଦୁ ଭର୍ତ୍ସନାରୁ ସୁରୁ ହୋଇ କଡ଼ାକଡ଼ା ଧମକ ରୂପେ ବାହାରକୁ ଆସିପାରେ । ଏବେ ଏମିତିକା ସବୁ ଅବସର ବ୍ୟାଧିର ସାଧାରଣ ଉପସର୍ଗ ।

କସ୍‌ମସ୍‌ର ଡାଡ଼ିମମିଙ୍କ ଅନୁପସ୍ଥିତିରେ ତା ପାଇଁ ରଥ କରି ଦେଇଥିଲେ । କନିଅର ଫୁଲ ସଜାଇବାରେ ସେ ତାଙ୍କର ପୋଖତ ଏସ୍‌ଥେଟିକ୍ ସେନ୍‌ସର ସଦ୍‌ବ୍ୟବହାର ବି କରିଥିଲେ । ତାପରେ କସ୍‌ମସ୍‌ର ଫୁଲଠୁଁ ଆହୁରି ହାଲକା ଓଠର ଚୁମା ତାଙ୍କ ବୁଢ଼ିଆ ଗାଲ ଉପରେ କୁଡ଼ୁଡ଼ି ହୋଇ ପଡ଼ିଥିଲା । କସ୍‌ମସ୍ ବିପୁଳ ଆନନ୍ଦ ଭିତରେ ଘରସାରା ରଥ ଟାଣି ଟାଣି ହରିବୋଲ ପକାଇଥିଲା । ମମି ଆସିବା ଆଗରୁ ରଥଟାକୁ ଭାଙ୍ଗିଦେବାକୁ ସତ ବଳିଲା ନାହିଁ ଯେ, ସେ ମହାନାକୁ ଡାକି ଦେଇ ଦେଇଥିଲା ।

କସ୍‌ମସ୍‌ର ଜେଜେମାଆ ଆଜିକାଲି ଦିନକୁ ଦିନ ଉଦାସ ହୋଇ ଉଠୁଛି । ସେ ବେଶି କଥା କହେ ନାହିଁ । ଠାକୁର ଘରେ ସଞ୍ଜେ ସକାଳେ ପଶି ଲୁହ ଗଡ଼ାଏ । ଆଠବର୍ଷ ହେଲା ପୁଅ ଗଲା—ଗଲାପୁଣି ବାହୁଡ଼ି ନଇଲା । ମଝିରେ ମଝିରେ ସେ ଅନେକ ଟଙ୍କା ଓ ଚିଠି ପାଏ । ସେଠିକା

ଜୀବନର ଲୋଭନୀୟ ବୃତ୍ତାନ୍ତ ବି ଚିଠିରୁ ପଢ଼େ । ସେଠିକା ଖାଦ୍ୟପେୟ, ରାସ୍ତାଘାଟ, ଘରଦ୍ୱାର, ସାମାଜିକ ସ୍ୱାଧୀନତା ମଣିଷକୁ ମଣିଷ ଭଳି ବଞ୍ଚିବାକୁ କେମିତି ସୁଯୋଗ ଦେଉଛି । ଶୀତାତପ ନିୟନ୍ତ୍ରିତ ଘର, ଫ୍ରିଜ୍, ଟି. ଭି. ତା ରହୁଥିବା ଘରର ଆହୁରି କେତେନା କେତେ ସୁନ୍ଦର ଶୋଭନୀୟ ଚିତ୍ର । ଆହୁରି ମଧ୍ୟ ବେଳେବେଳେ ସନ୍ଦେଶ ଆସେ ଟିକିଏ ସୁବିଧା ହେଲେ ପୁଅ ଆସି ମାଆଙ୍କୁ ସେଠିକି ନେଇଯିବ । ତା ପାଇଁ କଣ୍ଟିନେଣ୍ଟ୍ ଟୁର ସହ, ଆଉ କେତେନା କେତେ ପ୍ରୋଗ୍ରାମ୍ । ସେଥିପାଇଁ ଏତେ ଏତେ ଖର୍ଚ୍ଚ ହେବ । ପୁଅପଣିଆ ଅହଂର ପ୍ଲାନ୍ ଏଣ୍ଡ ଏଷ୍ଟିମେଟ୍ । ହିମାଳୟ ବେଳେ-ବେଳେ ପରିସ୍ଥିତିକୁ ହାଲୁକା କରିବା ପାଇଁ ଘରଣୀକୁ ଉପଦେଶ ଦିଅନ୍ତି ଯେ ସେ ସମ୍ବଲପୁରୀ ଶାଢ଼ୀ ଛାଡ଼ି ଏଣିକି ମେକ୍ସି ପିନ୍ଧିବାକୁ ଅଭ୍ୟାସ କରୁ । ହସିବା ବା ହସିବାର ଅନ୍ୟରୂପ କୃତ୍ରିମ ରାଗିବା ବଦଳରେ ଘରଣୀ କେବଳ ଗୋଟାଏ ଲମ୍ବା ନିଃଶ୍ୱାସ ଛାଡେ ।

ଦିନେ ଖରାବେଳେ କସ୍ମସ୍ ଜେଜେମାଆ ତାଙ୍କୁ ଉଠାଇ ହାତକୁ ଖଣ୍ଡେ ଚିଠି ବଢ଼ାଇ ଦେଲା । ଚିଠିଟା ପୋଷ୍ଟମେନ୍ ପାଖରୁ ତଟକା ଆମଦାନୀ ହୋଇଛି । ଚିଠିଟା ଖୋଲା ହୋଇଛି ଓ ପଢ଼ା ସରିଛି । ପୁଅ ଚିଠି ଆସିଲେ ମାଆ ନ ପଢ଼ି ବାପାଙ୍କୁ ପଢ଼ିବାକୁ କେବେ ସୁବିଧା ଦିଆଯାଏ ନାହିଁ । ଜେଜେମାଆଙ୍କ ଆଖିରେ ଲୁହ ଭର୍ତ୍ତି ହେଇ ଯଣା ତଳକୁ ଓହ୍ଲେଇ ଆସୁଛି ।

ହିମାଳୟ ଚିଠିଟା ପଢ଼ି ଚାଲିଲେ । ପୁଅ ଲେଖିଛି--ବୋହୂର ଗର୍ଭନଷ୍ଟ ହେଇ ଯାଇଛି । ରିସର୍ଚ୍ଚ ପାଇଁ ଅତ୍ୟଧିକ ପରିଶ୍ରମର ପରିଣାମରେ ଏପରି ଅଘଟଣ ଘଟିଲା । ବୋହୂ ସେଠି ରିସର୍ଚ୍ଚ କରୁଥିଲା । ବୋହୂର ମାନସିକ ଅବସ୍ଥା ଭଲ ନାହିଁ । ସେମାନେ ଯେଉଁ ବୁଢ଼ୀର ଘରେ ଭଡ଼ା ନେଇ ରହୁ-ଛନ୍ତି, ତା ସ୍ୱାମୀ ତାକୁ କୋଡ଼ିଏ ବର୍ଷ ତଳେ ଛାଡ଼ପତ୍ର ଦେଇଥିଲା । ତାର କିଛି ଛୁଆପିଲା ହୋଇ ନାହାନ୍ତି । ବୁଢ଼ୀଟା ସବୁବେଳେ ବୋହୂକୁ କହୁଥିଲା ସେ ଏଣିକି ଭାରି ସୁନ୍ଦର ଦିଶୁଚି । ସନ୍ତାନର ସୂଚନା ଆସିଲେ ଜନନୀ ରୂପମୟୀ ହୁଏ । ନାରୀତ୍ୱର ଶ୍ରେଷ୍ଠ ମର୍ଯ୍ୟାଦାରେ ନାରୀ କେବଳ ମହୀୟସୀ

ହୁଏନାହିଁ, କମମାସ୍ନା ମଧ୍ୟ । ପୁଅ ଲେଖିଛୁ—ବୋହୂକୁ ବୁଢ଼ୀ ଇମିତ ହାଉଉଉଥିଲ । ବୋହୂ କହୁଛୁ, ସେ ବୁଢ଼ୀ ଗୋଟେ କଣ୍ଆ ଡାଆଣୀ । କସ୍‌ମସ୍‌କୁ ସବୁବେଳେ ଡାଆଣୀଟା ଲଳେଇଲ୍ ଆଖିରେ ଚାହେଁ । ସେ ତା ଛୁଆକୁ ପେଟରୁ ଖାଇଛୁ । ବୋହୂ ସେ ଘର ଛାଡ଼ିଦେବାକୁ ଜିଦ୍ ଧରି ବସିଛୁ । ବୋହୂ ବାରମ୍ବାର କହୁଛୁ, ମାଆକୁ କହିବ ଡାଆଣୀର ଖରଦୃଷ୍ଟି କଟିଯିବାକୁ ସେ ନିଶ୍ଚୟ ଅନ୍ତଶୀଘ୍ର ଗୋଟେ ଡେଉଁରିଆ ପଠାଇବେ ।

ହିମାଳୟ ଚିଠିପଢ଼ା ଶେଷ କରି ସ୍ତ୍ରୀ ଆଡ଼କୁ ଚାହିଁଲେ । ତା ଆଖିରେ ଲୁହର ସର୍ଜନ ବନ୍ଦ ହୋଇନ । ହିମାଳୟ ଜଣେ ସିଦ୍ଧପୁରୁଷର ଭୂମିକା ନେଇ ସ୍ତ୍ରୀର ମୁଣ୍ଡକୁ ଆଉଁସି ଆଉଁସି ନିଶ୍ଚିତ ଭରସା ଦେଲେ; ତା ପୁଅ ବୋହୂ ଅବଶ୍ୟ ଫେରି ଆସିବେ । ତା ପରେ ଘରୁ ବାହାରି ଯାଉଁ ଯାଉଁ ଭାବୁଥିଲେ ଫରେନ୍‌ରେ ରିସର୍ଚ୍ଚ କରୁଥିବା ଅତି ଉଚ୍ଚଶିକ୍ଷିତା ବୋହୂ ଡେଉଁରିଆ ଖୋଜୁଛୁ । ଚରୈବେତ । ଚରୈବେତ ।



# ଅବାଧ ପ୍ରଜାପତି

ମୁଖ୍ୟମନ୍ତ୍ରୀଙ୍କ ପି. ଏ. ହଠାତ୍ ଫୋନ୍‌ରେ ଡ଼ାକି ସ୍ଥାନୀୟ ବିଧାୟକଙ୍କୁ ଜଣାଇ ଦେଲେ ଯେ ବିଧାୟକଙ୍କର ଏକାନ୍ତ ଆନ୍ତରିକ ଅନୁରୋଧ ତଥା ହାର୍ଦ୍ଦିକ ଦାବୀକୁ ଅନୁଧ୍ୟାନ କରି ତାଙ୍କ ଅଞ୍ଚଳରେ ଏକ ମହିଳା ଆଶ୍ରମ ବସାଇବାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ବିଶେଷ ଆଗ୍ରହ ପ୍ରକାଶ କରୁଛନ୍ତି । ମନ୍ତ୍ରୀ ମୁକୁଟଙ୍କ ଏତାଦୃଶ ସଦୟ ଅନୁଗ୍ରହ ପାନକରି ବିଧାୟକ ମହୋଦୟ କେବଳ ଉଦ୍‌ବୁଦ୍ଧ ହେଉଁ ହେଉଁ ଉନ୍ମତ୍ତ ହୋଇ ନଥିଲେ, ତାଙ୍କ ଅଞ୍ଚଳର ସର୍ବସାଧାରଣଙ୍କୁ ମଧ୍ୟ ଧନ୍ୟ ଧନ୍ୟ ଦେବାକୁ ବାଧ୍ୟ କରିଥିଲେ । ତା'ପରେ ସୁସ୍ଥ ଶାସନକ୍ରମର ନୀତିବଦ୍ଧ ପରମ୍ପରା ରକ୍ଷାକରି ଫାଇଲର ପଠାପଠି ଉପର ତଳ ଟେବୁଲ ଭିତରେ ଯୋଜନାର ବାସ୍ତବୀକରଣ ସାଧାରଣତଃ ସେଭିକି ଧିମେଇ ଯିବାର କଥା; ଏ କ୍ଷେତ୍ରରେ ତାର ବ୍ୟତିକ୍ରମ ଦେଖା ଯାଇଥିଲା । କାରଣ ଏବଂବିଧ ଯୋଜନା ଟିଖୋଦମାଲିକ ମନ୍ତ୍ରୀ ମାନ୍ୟବରଙ୍କ ଆଶୁ ମାନସିକ ଆବଶ୍ୟକତା ବୋଲି ସମ୍ପୃକ୍ତ କର୍ମକର୍ତ୍ତାମାନେ ମହାମାନ୍ୟଙ୍କ ସାନ୍ନିଧ୍ୟରେ ସେମାନଙ୍କ ଅତୀତର ଅନୁଭୂତି ଓ ଅଭ୍ୟାସରୁ ହୃଦୟଙ୍ଗମ କରିବାକୁ ଅଭ୍ୟସ୍ତ ହୋଇଯାଇଥିଲେ । ସ୍ଥାନ ନିରୂପଣ, ଭୂମିକ୍ରୟ, ଶିଳାନ୍ୟାସ, ଗୃହ ନିର୍ମାଣ ଇତ୍ୟାଦି ଇତ୍ୟାଦି ଯାବତୀୟ କାମ ଅତି ତତ୍ପରତାର ସହିତ ଶେଷ ହୋଇଗଲା । ଅବଶ୍ୟ ବିବେକବନ୍ତ ବିଧାୟକ ମହୋଦୟ, ବିଚକ୍ଷଣଶୀଳ ସମ୍ପୃକ୍ତ ଉପର ଅଫିସରଙ୍କ ଓ ତାଙ୍କ ତଳସ୍ଥ ସମସ୍ତ ବିଚକ୍ଷଣ କର୍ମଗୃହୀ ପଙ୍ଗତ, ବିଭବ ଶିକାରୀ କଣ୍ଟ୍ରାକ୍ଟର କର୍ମଯୋଗୀ ଏକାଠି ହୋଇ ସେମାନଙ୍କ ସମ୍ମିଳିତ ଚିନ୍ତା, ଚିତ୍ତ ଓ ବିତ୍ତ ସମ୍ପର୍କୀୟ ସାଲିସର ସମନ୍ୱୟ ଘଟାଇ ସମସ୍ତେ ସନ୍ତୃପ୍ତ ସ୍ୱସ୍ଥ କାର୍ଯ୍ୟରେ ଅତି ତତ୍ପର ହୋଇ ଉଠିଥିଲେ ଏବଂ କଣ୍ଟ୍ରାକ୍ଟର କରିତ୍କର୍ମା କମ୍ପା କନ୍ତୁ କୈଫିୟତ୍‌ର ବାଟ ଓଗାଳି ନପାଇ ଯେନତେନ ପ୍ରକାରେଣ ଯେତେଶୀଘ୍ର ସମ୍ଭବ ସୁରୁଖୁରୁରେ ଯୋଜନାର ମୂର୍ତ୍ତି ମାରିଦେଲେ । ସ୍ଥାନ ନିର୍ବାଚନ ସ୍ୱୟଂ ମନ୍ତ୍ରୀ ମହାଗୁରୁ ସ୍ଥିରକରିଥିଲେ । ବସ୍ତିଠାରୁ କେତେ ମାଇଲ ଦୂରରେ ସ୍ୱାଭିମାନର ସ୍ୱାତନ୍ତ୍ର୍ୟ

ତାରତମ୍ୟ ରଖି ସମ୍ପୂର୍ଣ୍ଣ କୋଳାହଳମୁକ୍ତ ପାହାଡ଼ ତଳ ନିଭୃତ ଉପ-ତ୍ୟକାରେ ଆଶ୍ରମ ସ୍ଥାପିତ ହେବାର ପରିକଳ୍ପନା ମହତ୍‌ପ୍ରାଣ ମହାମନ୍ତ୍ରୀଙ୍କର ପୂତପବିତ୍ର ମସ୍ତିଷ୍କରୁ ସମ୍ଭବ ହେବା ସମ୍ପୂର୍ଣ୍ଣ ସ୍ୱାଭାବିକ। ଏପରି ପରି-କଳ୍ପନା ପଛରେ ଯଥେଷ୍ଟ ବୌଦ୍ଧିକ ଓ ବିଚାରସାପେକ୍ଷ ଉପଯୁକ୍ତ ଯୁକ୍ତି ବି ରହିଥିଲା। ଆଶ୍ରମର ଅନାବିଳ ପରିସର, ପ୍ରାକୃତିକ ଯୋଗସୂତ୍ର ହେତୁ ଆଶ୍ରମବାସିନୀମାନଙ୍କ ମାନସିକ ସୁସ୍ଥତା, ପ୍ରତିକ୍ଲୀବ ସମାଜର ଅସାମାଜିକ-ତାରୁ ଯଥାସମ୍ଭବ ନିଷ୍କୃତି ପ୍ରଭୃତି ବିଷୟ ବିଚାରକୁ ନେଇ ମନ୍ତ୍ରୀ ସଦ୍‌-ଗୁରୁ ଜାଗାଟାକୁ ପସନ୍ଦ କରିଥିଲେ। ମନ୍ତ୍ରୀଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ବିତ୍ତ ବିନିଯୋଗ ଦ୍ୱାରା ତତ୍‌କାଳୀନ ପ୍ରକାଶିତ ସମ୍ବାଦପତ୍ରର ସୁଯୋଗ୍ୟ ସମ୍ପାଦକ ନାମକରଣର ଭାରନେଇ ଆଶ୍ରମର ନାମ ଦେଲେ 'ଆଶ୍ରିତା ଆଶ୍ରମ।'

ଆଶ୍ରିତା ଆଶ୍ରମରେ ଆବାସିକାମାନେ ଆସି ଆଶ୍ରୟ ନେଲେ। ଆଶ୍ରମରେ ପ୍ରବେଶ ପାଇଁ ଯୋଗ୍ୟାଯୋଗ୍ୟ ବାଛିବାକୁ ଏକ ବିଜ୍ଞ ବିଚାରକ ମଣ୍ଡଳୀ ଗଠିତ ହୋଇଥିଲା। ବିଧାୟକଙ୍କ ମୁରବିତ୍ୱରେ ସଂସ୍ଥାପିତ ବିବେ-ଚକ ମଣ୍ଡଳୀ ମଧ୍ୟରେ ଶକ୍ତିଶାଳୀ ସଭ୍ୟ ରୂପେ ଯେଉଁମାନେ ସକ୍ରିୟ ହୋଇ ଉଠିଥିଲେ, ସେମାନଙ୍କ ମଧ୍ୟରେ ମୁଖ୍ୟଥିଲେ ମନ୍ତ୍ରୀଙ୍କର ଜ୍ଞାନ ଗରିମାଧାରୀ ପତ୍ରିକା ସମ୍ପାଦକ ତଥା ତାଙ୍କ ଗୃହଲକ୍ଷ୍ମୀଙ୍କର ପାନପ୍ରିୟ ସମ୍ପର୍କୀୟ ସାନ ଭାଇ ଓ ମନ୍ତ୍ରୀଙ୍କର ଭିତର ସଂସ୍ଥାର ସର୍ବେସର୍ବା ତ୍ରିଭଙ୍ଗୀ ଓରଫ୍‌ ତାଙ୍କର ଅଙ୍ଗଲଗା ଅତିବିଶ୍ୱାସୀ ଗୃହର ଶିରୋମଣି।

ଆଶ୍ରମ ପ୍ରତ୍ୟାଶିନୀମାନଙ୍କ ବୟସ, ସେମାନଙ୍କ ସାମାଜିକ ଅସ-ହାୟତା, ସେମାନଙ୍କ ପରିବାରର ଦୟନୀୟ ସ୍ଥିତି, ସେମାନଙ୍କ ସମର୍ପିତ ବ୍ୟକ୍ତିତ୍ୱକୁ ବିଚାରକୁ ନେଇ ସେମାନଙ୍କୁ ଆଶ୍ରମରେ ସ୍ଥାନିତ କରାଯାଉଥିଲା। ବିଧାୟକ ମହୋଦୟ ତାଙ୍କର ଅଧିକାଂଶ ସମୟକୁ ଆଶ୍ରମ କାର୍ଯ୍ୟରେ ବିନିଯୋଗ କରିବାକୁ ଏଣିକି ବାଧ୍ୟ ହୋଇ ପଡ଼ିଲେ। ଏକେତ ଅନୁଷ୍ଠାନଟି ଆରମ୍ଭର ଅବସ୍ଥାରେ ଥିଲା। ତାପରେ ଏତେଗୁଡ଼ାଏ ବୟସର ରିକ୍ସ ଧରିଥିବା ନବାଶ୍ରୟୀମାନଙ୍କ ନ୍ୟାସ ସଂରକ୍ଷଣର ଗୁରୁଦାୟିତ୍ୱ ତାଙ୍କୁ ଅତି ମାତ୍ରାରେ ସଚେତନ କରି ପକାଇଥିଲା। ତାଙ୍କ ବିଧାନମଣ୍ଡଳୀର ଅନ୍ୟାନ୍ୟ

ଉନ୍ନୟନମୂଳକ କାମଦାମ ପ୍ରତି ସେ କେମିତି ଏଣିକ ବିତସ୍ପୃହ ହୋଇ ଉଠିଥିଲେ । ଆଶ୍ରମର ଅଗ୍ରଗତିକୁ ତାଙ୍କ କୃତିତ୍ୱର ପରାକାଷ୍ଠା ବୋଲି ସେ ଧରିନେଇ ଥିଲେ ବୋଧହୁଏ । ବିରୁଦ୍ଧ ଦଳର କୁଖ୍ୟାତନେତାମାନେ ତାଙ୍କ ନାମରେ ଏଣୁତେଣୁ ଅପବାଦର ଦୁହା ଉଠାଇ ତାଙ୍କୁ ଅପଦସ୍ତ କରିବାର ପ୍ରଚେଷ୍ଟାରେ ଯେ ନଥିଲେ ତା ନୁହେଁ । ତା'ଛଡ଼ା ନିଜ ପରିବାରର ବାପ ଘର ପୁଅପୁତୁରା, ଝିଅଝିଆରୀ ତାଙ୍କୁ କେମିତି କେମିତି ସନ୍ଦେହ ଆଖିରେ ଦେଖୁଛନ୍ତି ବୋଲି ସେ ଅନୁଭବ କରୁଥିଲେ । ବିଶେଷକରି ତାଙ୍କର ବେଳେ ବେଳେ ସାମାନ୍ୟ ମୁଖରା ସ୍ତ୍ରୀ କେତେବେଳେ କେମିତି ଚଟିଯାଇଁ ଖୋଲାଖୋଲି ତାଙ୍କ ଚରିତ୍ର ଉପରେ ଆକ୍ଷେପ କରୁଥିଲେ । ଏସବୁ ସତ୍ତ୍ୱେ ଦାୟିତ୍ୱ ଦୃଷ୍ଟିରୁ ଆଶ୍ରିତା ଆଶ୍ରମ ପ୍ରତି ତାଙ୍କର କର୍ତ୍ତବ୍ୟ ସେ ଆସ୍ତେ ଆସ୍ତେ ବଢ଼ାଇ ଚାଲିଥିଲେ । ଉପରୁ ମନ୍ତ୍ରୀଙ୍କର ଚଢ଼ଉ ବେଳେ ବେଳେ ଆସି ତାଙ୍କ ପାଖରେ ପହଞ୍ଚୁଥିଲା । ବିଭିନ୍ନ ଉତ୍ସବର ସୃଷ୍ଟି ଓ ପୃଷ୍ଟିସାଧନ କରି ଆଶ୍ରମରେ ମନ୍ତ୍ରୀଙ୍କର ଆବିର୍ଭାବର ବ୍ୟବସ୍ଥା କରିବାକୁ ସେ ବାଧ ହେଉଥିଲେ । ମନ୍ତ୍ରୀଙ୍କର ପାନମତ୍ତ ପତ୍ରିକା ସମ୍ପାଦକଙ୍କୁ ସମ୍ଭାଳିବା ଆଉ ଏକ ମୁସ୍କିଲ କାମ ଥିଲା । ତାଙ୍କର ତୃପ୍ତି ବିଧାନ ଉପରେ ନିଜର ବିଧାୟକତ୍ୱ ନିର୍ଭର କରୁଥିଲା । ସବୁଠୁଁ ବେଶୀ ତାଙ୍କୁ ହୀନମନ୍ୟତା ଦେଉଥିଲା ମନ୍ତ୍ରୀଙ୍କ ଗୃହକରର ନବାବୀ ଅନୁପ୍ରବେଶ । ମନ୍ତ୍ରୀ ଓ ସମ୍ପାଦକ ନିଜ ନିଜର ମର୍ଯ୍ୟାଦାକୁ ସଜେଇ ରଖି ସମ୍ମାନର ଚୂନପୋଛ ତଳେ ଆପଣା ଆପଣାର ଭିତରେ ଫାଇଦା ସୁରୁଖୁରୁରେ ଉଠେଇ ନେଉଥିଲେ । କିନ୍ତୁ ଗୃହକର ହାରାମଜାଦା ଯେତେବେଳେ ପାରେ ସେତେବେଳେ ଆସି ଆଧିପତ୍ୟର ଆସନ ଜମାଇ ତାର ଦେହ ଓ ପକେଟ ପ୍ରାପ୍ୟ ପାଇଁ ପ୍ରତ୍ୟକ୍ଷ ହୁକୁମ ଜାରି କରୁଥିଲା । ଏଇ ମାଂସଖୋର ହାଙ୍ଗର୍‌ମାନଙ୍କୁ ଦେହର ଖୋରାକ ଯୋଗାଇବା ପାଇଁ ବହୁ ମୁସ୍କିଲ ସମସ୍ୟାର ସାମନା କରିବାକୁ ତ ପଡ଼ୁଥିଲା । ତାପରେ ସେମାନଙ୍କ ଏତାଦୃଶ ମାଂସ ମହୋତ୍ସବର ସଫଳ ସମ୍ପାଦନ ନିମିତ୍ତ ଅନୁସଙ୍ଗିତ ସାମଗ୍ରୀର ବାରମ୍ବାର ବ୍ୟବସ୍ଥା ତାଙ୍କୁ ଅନ୍ୟ ଏକ ନୂତନ ପରିସ୍ଥିତି ଭିତରକୁ ଝିଙ୍କି ନେଉଥିଲା । ସେ ଅଗତ୍ୟା ବାଧହୋଇ ଥିଲାବାଲାମାନଙ୍କ ବାହୁଗ୍ରସ୍ତ ତଳେ ମୁଣ୍ଡ ଗୁଞ୍ଜିଥିଲେ ଓ ସେମାନଙ୍କ ପଇସାର ସହାନୁଭୂତି ବିନିମୟରେ ସେମାନଙ୍କୁ ଆଶ୍ରମର ପ୍ରକାର ଦେଇ

ସନ୍ତୁଷ୍ଟ କରିବାକୁ ପଡ଼ୁଥିଲା । ତା'ପରେ ଅତିଥିମାନଙ୍କୁ ଚର୍ଚ୍ଚା । କାଳେବେଳେ ନିଜେ ଆଉ କଣ ଉପାସରେ ଶୁଅନ୍ତେ କି ? ଖୋଇବା ଅଭ୍ୟାସ ସାଙ୍ଗକୁ ଖାଇବା ଆଦତ୍ର ପାଗ ଉପରକୁ ଉଠି ଉଠି ସଉକଟା ତାଙ୍କର ଏକ ନଚ୍ଛୋଡ଼ବନ୍ଧା ଅଲବତ୍ ଆବଶ୍ୟକତା ହୋଇ ଚୌକଷ ତାଙ୍କ ଉପରେ ସବାର ହୋଇଥିଲା, ଆଉ ସେ ନିଜ ଅକ୍ତିଆରରେ ନିଜକୁ ରଖି ନପାରି ଅଭ୍ୟାସ ପାଖରେ ଅସହାୟ ଭାବରେ ଦାସ ହୋଇ ପଡ଼ିଥିଲେ ।

ତାଙ୍କ ଆଶ୍ରମ ବ୍ୟବସାୟର ମୂଳ ପୁଞ୍ଜି ଆଶ୍ରମ ଅନ୍ତେବାସିନୀଙ୍କୁ ନିଜ ବେପାରରେ ଅନୁଗତା କରାଇବା ପାଇଁ ତାଙ୍କୁ ନାହିଁନଥିବା ହନ୍ତସନ୍ତ ହେବାକୁ ହେଉଥିଲା ! ସେମାନଙ୍କ ଦେହ ସୌଦାପ୍ରତି ଆସକ୍ତି ଆଣିବାଲାଗି ସେମାନଙ୍କୁ ମାତ୍ରାଧିକ ଛଳନା ଆଚ୍ଛାଦିତ ପ୍ରରୋଚନା ଦେବାକୁ ପଡ଼ୁଥିଲା । ସେମାନଙ୍କ ଭିତରେ ଥିବା ସହଜାତ ଇଜ୍ଜତର ଅହଂକୁ ଅନ୍ୟ ଉତ୍ତେଜନା ଓ ଉପସର୍ଗର ଉତ୍କୃଷ୍ଟତା ଭିତରେ ସମ୍ପୂର୍ଣ୍ଣ ଶୂନ୍ କରିଦେବା ନିଶ୍ଚୟ ଏକ କଠିନ ବ୍ୟାପାର ଥିଲା । ଅବଶ୍ୟ ସେମାନଙ୍କ ସିଲେକ୍‌ସନ୍ ବେଳେ ସେମାନଙ୍କ ମନର ଜଖମ ଉପରେ ବିଶେଷ ଦୃଷ୍ଟି ଦିଆଯାଉ ଥିଲା । ଭଙ୍ଗାମନକୁ ମୋଡ଼ମାଡ଼ି ଆବଶ୍ୟକୀୟ ଗ୍ରୁଅରେ ପୂରେଇବା ସହଜ ହୋଇଥାଏ । ନାରୀ ଚରିତ୍ର ଅତି ବିଚିତ୍ର । ଭିତରେ ମୃଗୁଣୀର ଯଥେଷ୍ଟ ଭୟ ନେଇ ବି ଶିକାର ବେଳେ ସେମାନେ ବାଘୁଣୀପରି ଲମ୍ଫ ମାରନ୍ତି । ଆଉ ଏଇ ବାଘୁଣୀମାନଙ୍କୁ ପଣ କରିବା ପାଇଁ ରିଙ୍ଗ୍ ମାଷ୍ଟରର ପୋଖତ ହାତରେ ଚାବୁକ କାରସାଦି ଦରକାର । ହୁସିଆର ହୋଇ ସେମାନଙ୍କୁ ଖେଳେଇବାକୁ ପଡ଼େ । ନାରୀର 'ନା'ର ନେପଥ୍ୟରେ 'ହଁ'ର ବହୁ ସମ୍ଭାବନା ଥାଏ । କିନ୍ତୁ 'ହଁ'ର ପଛପଟ ପାଇଁ ହୁସିଆର ହେବାକୁ ହେବ । ହୁଏତ ସେଠି ପାତାଳପୁରି ଖାଲ ଅପେକ୍ଷା କରିପାରି ଥାଏ ।

ବିଧାୟକ ମହୋଦୟ ବିଭିନ୍ନ ସାଧନା ଭିତରେ ନିଜକୁ ନିବିଷ୍ଟ କରି କରି ପ୍ରାୟ ପ୍ରାଜ୍ଞ ପାଲଟି ଯାଇଥିଲେ । ତାଙ୍କର ବ୍ୟବସାୟ ଆରମ୍ଭ ବେଳରେ ଥରକର କଥା । ଜଣେ ନବାଗତା ଆଶ୍ରମ ରୂପସୀ ଆଗରେ ବହୁ ପ୍ରଲୋଭନର ଥୋପ ହଲାଇ ସେ ଭାବିଲେ ଯେ ତା' ଗାଲଶିରେ ସେ କଣ୍ଠା ଭୁକେଇ ପାରିଛନ୍ତି । କାରଣ ତାକୁ ବେପାରରେ ଖଟେଇ ପାରିଲେ

ସେ ମୋଟା ଅଙ୍କର ସ୍ୱାର୍ଥ ପାଇବେ ବୋଲି ଜଣେ ମାଂସାଶୀ ପୁଞ୍ଜି ପତିଠାରୁ ବଇନା ଧରିଥିଲେ । ତା'ପରେ ଘଟଣା ଯାହା ହେଲାନା, ପ୍ରାରମ୍ଭ ଦୃଶ୍ୟରେ ସେ ଯେତିକ ବସ୍ତ୍ର ହୋଇଥିଲେ, ସମାପ୍ତି ସିନ୍‌ରେ ସେ ସେତିକ ବସି୍ତ ହୋଇଥିଲେ । ନିର୍ଦ୍ଦିଷ୍ଟ ଗ୍ରାହକ ତଥା ଆଶ୍ରମ ପୃଷ୍ଠପୋଷକଙ୍କ ପାଖରେ ସେ ମହୀୟସୀ ମହିଳାଙ୍କୁ ତାଙ୍କର ମୂଲ୍ୟବାନ୍ ଦେହ ସହିତ ପହଞ୍ଚାଇ ଦେଇ ସେ ଖସି ଆସି ଫେରନ୍ତା ପଥକୁ ଅପେକ୍ଷା କରି ରହିଲେ । ହଠାତ୍ ସେ ସଖି ଶିରୋମଣି ଉତ୍‌ଫଣା ହୋଇ ପ୍ରବଳ ପ୍ରତିରୋଧର ହୁଙ୍କାର ମାରି ଆତ୍ମରକ୍ଷାର ଯୁଦ୍ଧ ଆରମ୍ଭ କରିଦେଲେ । ସେ ଭାବୁଥିଲେ ହସ୍ତକ୍ଷେପ କରି ତାଙ୍କୁ ଫେରାଇ ଆଣିବେ । ସେ ବିପଦର ଗନ୍ଧ ବାରୁଥିଲେ । କିନ୍ତୁ ସଖୀଙ୍କର ଠେଲାପେଲାର ସମାଗତ ଆଘାତକୁ ଖାତିର ନ କରି ଗ୍ରାହକ ବାହାଦୁର ତାଙ୍କୁ ତାଙ୍କ ଉପର ମହଲକୁ ଟେକି ନେଇଗଲେ । ବିଧାୟକ ପ୍ରମାଦ ଗଣିଲେ । ଆବଶ୍ୟକୀୟ ସମୟ କଟିଗଲା ପରେ ସେ ଫେରି ଆସିଲା ଓ ସମ୍ପୂର୍ଣ୍ଣ ସ୍ୱାଭାବିକା ଥିଲା । ସେ ତାଙ୍କୁ ବାଟରେ ଏପରି ଅଭିନୟର କାରଣ ପଚାରିବାରୁ ସେ ଟିକିଏ ହସି ଦେଇ ତାଙ୍କୁ ସିଲା ବୋଲି ଅବଜ୍ଞାର ସୂଚନା ଦେଇ ଉତ୍ତର ଦେଲା ଯେ ସେପରି ସଂଘର୍ଷ ହୋଇ ନଥିଲେ ତା'ର ଭାଉ କମି ଯାଇଥାନ୍ତା ଏବଂ ତେଣୁ ତା'ର ପ୍ରାପ୍ୟର ହାର ନିଶ୍ଚୟ କମ୍ ହୋଇଥାନ୍ତା । ତା'ପରେ ଯୁଦ୍ଧ କରି ନିଜକୁ ଜାଣିଶୁଣି ପ୍ରତିଦ୍ୱନ୍ଦୀ ପାଖରେ ହରାଇ ଦେଲେ, ବିଜେତାକୁ ବେଶୀ ସନ୍ତୋଷ ମିଳେ । ନୁହେଁ ? ସେ ଏଙ୍କ ଗାଲକୁ ଟିକିଏ ଟିପି ଦେଇଥିଲା ।

ସାଧାରଣତଃ ସ୍ୱାମୀହରା, ପତି ପରିତ୍ୟକ୍ତା, ପତିତା ପଦବାଚ୍ୟାଙ୍କୁ ସାମାଜିକ ସ୍ୱୀକୃତିର ମୃଗନାଭି ଶୁଙ୍ଘାଇ ଆଶ୍ରମକୁ ଅଣା ଯାଇଥାଏ । ସେମାନେ ସମ୍ଭୋଗର ସ୍ୱାଦୁ ଚାଖିଥାନ୍ତି । କିନ୍ତୁ ସମାଜର ଶୃଙ୍ଖଳାରେ ଶୃଙ୍ଖଳିତ ହୋଇ ବା ସାମାଜିକ ଭର୍ତ୍ସନାର ଶରବ୍ୟ ହୋଇ ନିଜର ମନ ଉପରେ ନିବୃତ୍ତିର ଅବସାଦ ଆଣିବାକୁ ବାଧ୍ୟ ହୋଇଥାନ୍ତି । ସେମାନଙ୍କ ଅବସାଦଗ୍ରସ୍ତ ଅବଚେତନକୁ ଉତ୍ତାପ ଦେଇ ଉଦଗ୍ର ହେବାକୁ ସୁବିଧା ଦିଆହୁଏ । ମାର୍ଜିତ ରୁଚିବୋଧକୁ ଭିତରୁ ଘୁଣ ଖୁଆଇ ଉପରର ଖୋଳପାକୁ କେବଳ ଆଶ୍ରମର ଆଦର୍ଶ ସିନ୍ଧାଇ ରଖାଯାଏ । ବିଧାୟକ ମହୋଦୟ ଭିନ୍ନ ପରିସ୍ଥିତିକୁ ଆୟତ୍ତକୁ ଆଣିବାକୁ ଯାଇଁ ନିଜର ଜମାଖାତାରେ ଅନେକ ଅନୁଭୂତିର ପୁଞ୍ଜି ଜମାଇ ରଖିଥିଲେ । କୌଣସି ଅବାଧ ପ୍ରଜାପତି ସହି

ତାଙ୍କ ବ୍ୟବସାୟର ବାସନା ନ ଶୁଙ୍ଘି ତାଙ୍କ ପଶ୍ଚରେ ବାହାରେ ସବୁବେଳେ ରହିବାକୁ ଚେଷ୍ଟା କରେ, ତାକୁ ଆଶ୍ରମର ଚୌହଦୀ ଭିତରୁ ହଟାଇବାକୁ ପଡ଼େ । ସେପରି ପଦକ୍ଷେପର ପରେ ପରେ ହଣ୍ଡାଫୋଡ଼ର ହଇଚମକ ଅବଶ୍ୟମ୍ଭାବୀ, ଏକଥା ସେ ଜାଣନ୍ତି । ସେଥିପାଇଁ ରକ୍ଷାକବଚ ଆଗରୁ ଯୋଗାଡ଼ କରିବାକୁ ହୁଏ । ଧର କୌଣସି ସ୍ୱାମୀ ଅନୁଗତା ବିଧବା ଅନ୍ତେବାସିନୀ ଯଦି ତାଙ୍କର ପଦ୍ମତୋଳା ନ ଶୁଣିଲା, ତାକୁ ବ୍ୟବସାୟର ସ୍ୱାର୍ଥ ଦୃଷ୍ଟିରୁ ପେଡ଼ରୁ ଖଲାସ କରିବାକୁ ପଡ଼ିବ । କିନ୍ତୁ ତାକୁ କାଳୀନାଗୁଣୀର ମୋହର ଦେଇ ବାହାରକୁ ଛାଡ଼ି ଦେବାକୁ ହୁଏ । ଯା' ଫଳରେ ସ୍ନେହ ପଦାକୁ ଗୋଡ଼ କାଢ଼ିଲା ମାତ୍ରେକେ ତା' ଉପରେ ସମାଜର ଠେଙ୍ଗା ପଡ଼ିବ । ଏ କ୍ଷେତ୍ରରେ ବିବେକବନ୍ତ ଲୀଳାପ୍ରିୟ ବିଧାୟକ ବେଳେ ବେଳେ ଶିକାରର ସାତ୍ତ୍ୱିକ ପଦ୍ଧତିକୁ ପ୍ରୟୋଗ କରନ୍ତି । ଜଣେ ବିଶ୍ୱସ୍ତ ଅର୍ଥବଶ ଦକ୍ଷ ଅଭିନେତାକୁ ଏକ ନିଷ୍ଠାବାନ ପ୍ରେମିକ ରୂପେ ତା' ନିକଟରେ ଠିଆ କରାଇବାକୁ ପଡ଼େ । ପ୍ରେମିକ ପ୍ରବର ନିଜର ଅଭିନୟଧର୍ମୀ ସଂଯମ,ସାଧୁତା, ତ୍ୟାଗର ପବନକୁ ଧୀରରୁ କ୍ଷୀପ୍ରତର କରେ, ଯେପରିକି ସେ ବିରହୀର ସ୍ଥିତଧୀ ମନ ଫାଙ୍କରେ ଅନୁଭବର ସ୍ୱର ଉଠିବ । ତା'ପରେ ତାକୁ ଯଥାଯୋଗ୍ୟ ସାମାଜିକ ସ୍ୱୀକୃତି ଦେଇ ବିଧିବଦ୍ଧ ଧର୍ମପତ୍ନୀ କରିବାକୁ ବ୍ୟାକୁଳତା ବଖାଣୁ ବଖାଣୁ 'ତୋ ବିନେ ଜୀବନ ଯିବ'ର ବାତୁଳତା ବି ତଥାକଥିତ ପ୍ରେମପାଗଳ ବାନ୍ତି କରି ବିରହୀର ମନ ଉପରେ ଭାବପ୍ରବଣତାର ମନ୍ଥନ ଦେବାକୁ ସକୌଶଳ ଚେଷ୍ଟା କରେ । ଆତ୍ମବିଶ୍ୱାସର ତୋଫାନ ଲଗି ନିଃସଙ୍ଗ ନାୟିକାର ମନ ଯେତେବେଳେ ବିଧୁରିତ ହୋଇଉଠେ, ପରିପକ୍ୱ ପରିସ୍ଥିତିର ସୁଯୋଗ ନେଇ ପନ୍ଥ ବିନମ୍ରୟ ଯୋଜନା ଧୂପକାଠିରେ ତାକୁ ଧୂଆଁଇ ତା'ଠାରୁ କେତେଖଣ୍ଡ ପ୍ରେମପତ୍ର ହାସଲ କରାଯାଏ । ତା'ପରେ କାମ ଫତେ । ସେହି ଚିଠିଗୁଡ଼ିକ ଶକ୍ତିଶାଳୀ ବିସ୍ଫୋରକ ପରି ତା'ର ପ୍ରତିହିଂସାଶୀଳ ମନକୁ ଚୁପ୍‌ଚାପ୍ ଶୋଇ ପକାଇବ ତ ଭଲ କଥା, ନହେଲେ ସେହି ଚିଠି ତାକୁ ସମାଜ ଆଗରେ ଭିନ୍ନରୂପ ଦେଇ ଠିଆ କରାଇବ । ଆଶ୍ରମର ଗର୍ହିତ ସ୍ୱରୂପକୁ ସେ ବାହାରେ ପ୍ରକାଶ କଲେ ବି ତା' ପ୍ରଳାପ ବୋଲି ଆପେ ଆପେ ଅବହେଳିତ ହୋଇଯିବ । ଏବଂ ବିଧି ନିଷାଦର ଫାନ୍ଦ ଓ ଗୋଲକଧନ୍ଦାକୁ ଯଦି ସାବିତ୍ରୀର ଅହଙ୍କାର ଧରି ସେ

ଫାଙ୍କିଦିଏ, ତେବେ ତା’ପାଇଁ ସିଧାସଳଖ ପଦ୍ଧତିର ବିକଳ୍ପ ବ୍ୟବସ୍ଥା ମଧ୍ୟ ରହିଛି । କୌଣସି ଅନ୍ତରଙ୍ଗ ସାଙ୍ଗ ଜରିଆରେ କିଛିଟା ନିଦପ୍ରଦ କେମିକେଲ୍ ପିଆଇ ଦେଇ ସଜ୍ଞାହୀନା ଅବସ୍ଥାରେ ପରିସ୍ଥିତିକୁ ସଜାଇ କେତେଟା ଅଶ୍ଳୀଳ ସ୍ନାପ ହାତ କରାଯାଇ ପାରେ । ତା’ର ମାସିକ ଧର୍ମ ବନ୍ଦ ହେଇ ଯାଇଥିଲା, ଗୋପନରେ ଔଷଧର ଆଶ୍ରୟ ନେଇ ନିଜକୁ ବିପଦମୁକ୍ତ କରିଛି ବୋଲି ଆଶ୍ରମ ସହଚରୀଙ୍କ ମୁଖରେ ଅପବାଦ ବର୍ଣ୍ଣାଯାଇ ପାରିବ । ରୋଗୀ ଦେଖି ନିଦାନ ଦେବାରେ ଵିଧାୟିକ ମହୋଦୟ ଜଣେ ଉପରପାହିଆ ଓସ୍ତାଦ୍ ରୂପେ ନିଜର ସାମର୍ଥ୍ୟ ଉପରେ ଆସ୍ଥା ସ୍ଥାପନ କରି ପାରିଥିଲେ । ଅବାଧା ନାଗୁଣୀ ନିଜର ଫୁତ୍କାରକୁ ବଳେ ବଳେ ଗିଳି ପକାଇବା ତ ଭଲ କଥା । ନହେଲେ ବେକରେ ବହୁ ସୃଷ୍ଟପୁଷ୍ଟ ଅନ୍ୟାୟ, ଅପରାଧ, ଅନୀତିର ପଥର ଓହଳେଇ ଦେଇ ଶୂଳରେ ବସାଇବା ପାଇଁ ବିଧାୟକଙ୍କୁ ବିଶେଷ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼େ ନାହିଁ । ଆଶ୍ରମର ଯନ୍ତା ଭିତରକୁ ଥରେ ପଶିଗଲେ, ନିସ୍ତାର ପାଇବା ସମ୍ଭବ ହୁଏନି । ବିଭିନ୍ନ ବ୍ୟବସ୍ଥାରେ କ୍ରମାଗତ ମାନସିକ ଧର୍ଷଣ ମାଧ୍ୟମରେ ତାଙ୍କ ଭିତରୁ ସେମାନଙ୍କ ବିବେକର ବାର୍ତ୍ତା ଓ ପ୍ରତି-କ୍ରିୟାର ସ୍ୱରକୁ ସମ୍ପୂର୍ଣ୍ଣ ଶୋଷି ନିଆ ହୁଏ । ସେମାନେ ମଖମଲ ପୋଷାକ ପିନ୍ଧି ସ୍ପ୍ରିଂଦିଆ କଣ୍ଢେଇ ଭଳି ତେଣିକି ଖାଲି ଦାନ୍ତ ନେଫଡ଼ନ୍ତି, ହାତ ଗୋଡ଼ ହଲାନ୍ତି ।

ଏଣେ ମନ୍ତ୍ରୀଙ୍କର ମାଂସ ସଉକ ଦିନକୁ ଦିନ ବଢ଼ି ବଢ଼ି ଗଲା । ଆଉ ବରାବର ଆହାର ହାବୁଡ଼େଇବା ପାଇଁ ବିଧାୟକଙ୍କ ଉପରେ ଅଣ୍ଡମତି ଜୁଲୁମ ବି ସୁରୁ ହୋଇଗଲା । ମନ୍ତ୍ରୀ ତାଙ୍କର ବାରମ୍ବାର ଆଶ୍ରମକୁ ଆସିବାଟାକୁ ଯେତିକି ଅସଙ୍ଗତ ବୋଲି ବିଚାର କଲେ, ଆସିବାର ଉଦ୍ଦେଶ୍ୟକୁ ହାସଲ କରିବାକୁ ତା’ଠୁଁ ଅନେକ ଅସଂଯତ ହୋଇ ଉଠିଲେ । ତାଙ୍କର ଉଭୟ ଚିନ୍ତାକୁ ଖାପ ଖୁଆଇ ବିହିତ ବ୍ୟବସ୍ଥା କରିବାର ଭାର ବିଧାୟକଙ୍କ ଉପରେ ଲଦି ଦେଇ ସବୁବେଳେ ତାଗଦା ପଠାଇଲେ । କାର୍ଯ୍ୟକ୍ରମରେ ମନ୍ତ୍ରୀଙ୍କର ପୁଣି ଏକ ନିଷ୍ଠୁର ସର୍ତ୍ତ ରହିଥିଲା । ଆଶ୍ରମର ବିକଶିତ ସମସ୍ତ ସୁଷମାକୁ, ମନ୍ଦାରଠାରୁ ମାଳତୀ ପର୍ଯ୍ୟନ୍ତ, ଏକ ପରେ ଅନ୍ୟକୁ ନିଜର ଉଦ୍ଧତ କ୍ଷୁଧାର ସାମନା ହେବା ପାଇଁ ସେ ନିରିକଠୋକ୍ ନିଜର ଉଦ୍ଦେଶ୍ୟ ପ୍ରକାଶ କରିଦେଇଥିଲେ । କେବେ କାହାକୁ ଅଫିସ କାମ ଆଳରେ, ବା କିଏ

ଛୁଟିରେ କେଉଁ ମଉସା ମାଉସୀ ଘରକୁ ଯାଇଛି ବୋଲି ପ୍ରଚାର କରି ମେଡ଼କେଲିକୁ କାହାର ଦରକାର ପଡ଼ିଲି ବୋଲି ସଫେଇ ଦେଇ ବିଧାୟକଙ୍କୁ ସେମାନଙ୍କୁ ଗୋଟି ଗୋଟି କରି ଅସୁର ଗୁହାକୁ ଆହାର ହେବା ପାଇଁ ପଠାଇବାକୁ ପଡ଼ିଲା । ମାଂସ ରାକ୍ଷସର ଭୋଜନ ସ୍ଥଳୀକୁ କେବଳ ମାଂସବଳି ଦେବାକୁ ପଡ଼ୁ ନଥିଲା । ତା ସହିତ ଅନ୍ୟ ସରଞ୍ଜାମର ପିଠା ଶଗଡ଼ ପଠାଇବାକୁ ବିଧାୟକ ବାଧ ହେଉଥିଲେ । ଏହି ବହୁଖର୍ଚ୍ଚ ସାପେକ୍ଷ ସୁଅାଙ୍ଗ ପାଇଁ ସବୁବେଳେ ବଡ଼ ବଡ଼ କଣ୍ଟ୍ରାକ୍ଟର, ହୋଲସେଲର, ଗଦ୍ଦିଦାରଙ୍କୁ ସୁବିଧା ଦେଇ ଆଶ୍ରମର ଆକର୍ଷଣ ପାଖକୁ ତାଙ୍କୁ ଟାଣି ଆଣିବାକୁ ପଡୁଥିଲା । ସେମାନଙ୍କ ମନୋମତ ମାଂସର ଉପାୟନକୁ ମନ୍ତ୍ରୀ ଅଗ୍ରନକ ବେଳେବେଳେ ତାଙ୍କର ଶୂକର ପିଆଦାକୁ ପଠାଇ ହାଜର କରାଇବାକୁ ହୁକୁମ ଜାରି କରୁଥିଲେ । ତେଣୁ ବଡ଼ ଅଖାଡ଼ୁଆ ଅବସ୍ଥାରେ ପଡ଼ି ବିଧାୟକ ସେମାନଙ୍କ ପାଖରେ ଅପଦସ୍ତ ହେଉଥିଲେ । ଅର୍ଥର ରପ୍ତାନି ମନ୍ତ୍ରୀଙ୍କ ପାଇଁ ବଢ଼ି ବଢ଼ି ଯାଉଥିଲା ବେଳେ ପଇସାର ଆମଦାନି ସାମନ୍ତଙ୍କଠାରୁ ଛୁଡ଼ ଛୁଡ଼ ଆସୁଥିଲା । ବିଧାୟକ ନିଜ ପାଖରେ ନିଜେ କେମିତି ଅସହାୟ ହୋଇ ପଡ଼ୁଥିଲେ । ଆଶ୍ରମ ଧନ୍ଦାରୁ ନିଜକୁ କିଏ ଓହରାଇ ନେବେ ? ମୁଖ୍ୟମନ୍ତ୍ରୀଙ୍କ ତାଲିକା ଖାତାର ରେଖାଙ୍କିତ ବିଶ୍ୱସ୍ତ କଲମରେ ନିଜକୁ ସ୍ଥାପିତ କରିନପାରିଲେ ଭବିଷ୍ୟତର ସବୁ ସ୍ୱପ୍ନ କଳ୍ପନାର ଅନ୍ଧାରର କଳା ଲେସି ହୋଇଯିବ । କଥା ଛଳରେ ମୁଖ୍ୟଙ୍କ ଠାରୁ ସେ କେତେଥର ପ୍ରୀତିପୂର୍ଣ୍ଣ ପ୍ରତିଶ୍ରୁତି ପାଇଛନ୍ତି । ସମୟ, ସୁବିଧା ଆସିଲେ ଅନ୍ତତଃ ରାଷ୍ଟ୍ରମନ୍ତ୍ରୀର ଗାଦିଟା ମାଡ଼ ବସିବାର ସମ୍ଭାବନାକୁ ଏଡ଼େଇ ଦେଇ ହେଉନି । ଆମ୍ବଟା ପାଚିକ ହାତ ପାହାନ୍ତାରେ ଓହଳିଛି । ବୋକାମି କରି ବଗିଚାରୁ ତଡ଼ା ଖାଇବାର ଦୁର୍ଯୋଗକୁ ସେ ଜାଣୁ ଜାଣୁ ପାଶ୍ଟେଟି ଆଣିବେ ? ଦ୍ୱନ୍ଦ୍ୱ ଭିତରେ ଛନ୍ଦି ହୋଇ ପଡ଼ି ସେ ଆଶ୍ରମଆଡ଼େ ଛୁଟିଯାଆନ୍ତି । ଆଶ୍ରମର ମାଂସ ଗନ୍ଧାଘର ଭିତରକୁ ପଶିଗଲେ ତାଙ୍କ ମନର ମହାବଳ ହେଣ୍ଟାଳି ଉଠେ । ମନ ଭିତରେ ଉଙ୍କି ମାରୁଥିବା ସାମୟିକ ଶ୍ମଶାନ ବୈରାଗ୍ୟକୁ ନିକାଲି ଦେଇ ସେ ପୁଣି ଆଶ୍ରମସର୍ବସ୍ୱ ହୋଇ ପଡ଼ନ୍ତି ।

ଝିଅ ବାରମ୍ବାର ସୁଶାରସ୍ ଓ ଅଭିମାନର ନାଲିସ୍ କରୁଥିବାରୁ, ମନ୍ତ୍ରୀଙ୍କ ଦାନ୍ତଯୋଗ୍ୟା ହେବା ପାଇଁ ତା'ର ଉଦ୍ଧତ ଦେହସମ୍ଭାର ଦେଖି

ବିଧାୟକ ତନୁଶ୍ରୀକୁ ଆଶ୍ରମରେ ଆଶ୍ରୟ ଦେଲେ । ତନୁଶ୍ରୀ ଦିନେ ତାଙ୍କ ଝିଅର ସହପାଠିନୀ ଥିଲି । ପରିସ୍ଥିତିର ଅଫିମଗିଳି ସେ ଯେତେ ବଣୁଆ ନେଉଳ ହେଲେ ବି ଦିନେ ଦିନେ ପୋଷା ମାନିଯିବ ବୋଲି ତାଙ୍କର ବିଶ୍ୱାସ ଥିଲି । ଦୁର୍ଘଟଣାରେ ପଡ଼ି ତା' ସ୍ୱାମୀଙ୍କର ଆକସ୍ମିକ ମୃତ୍ୟୁପରେ ଜୀବନ ତା'ର ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ଆଶ୍ରମରେ କିଛିଦିନ ରହି ନିଜକୁ ବ୍ୟବସ୍ଥିତ କରି ପାରିଲେ ଭବିଷ୍ୟତରେ ସେବାମୂଳକ କର୍ମମୟ ଜୀବନ ଦେଇ ନିଜର ଦୁର୍ଗତିକୁ ଭୁଲିଯିବାକୁ ଆଶା କରି ସେ ଆଶ୍ରମକୁ ଆସିଲି । ଆସୁ ଆସୁ ତା' ବାସନାରେ ମନ୍ତ୍ରୀ ମହାବାହୁ ଉଛନ୍ନ ହୋଇ ପଡ଼ିଲେ । ଅଫିସ କାମରେ ବରାତ ଧରି ତନୁଶ୍ରୀ ଯଥାଶୀଘ୍ର ରାଜଧାନୀକୁ ଗଲି । ତାଲୁ, ତା'ର ଅଜ୍ଞାତ ଭବିଷ୍ୟତକୁ ଗୃହୁଳାଇ ଗିଳି ପ॰ାଇବାକୁ ଅନ୍ଧାର ସେଠି ଆଁ କରି ବସିଥିଲି । ସେ ମଣିଷ ହେଇ ମଣିଷର ଜୀବନ ନେଇ ଯାଇଥିଲି । ତାଠୁ ମଣିଷର ସଜ୍ଞା ଲୁଟିନେଇ ତାକୁ ମୁର୍ଦ୍ଦାର କରି ଫେରାଇ ଦିଆଗଲି । ନିଜକୁ ବଞ୍ଚାଇବା ପାଇଁ ପ୍ରତିରୋଧ କରିବାକୁ ତା'ର ଅଶକ୍ତ ମାଂସପେଶି ତାକୁ ସାହାଯ୍ୟ କରି ପାରି ନଥିଲି । ପ୍ରତିବାଦ, ପ୍ରତିଶୋଧ ପାଇଁ ବି ସୁଯୋଗ ପାଇଲି ନାହିଁ । କ୍ରମାଗତ ତିନି ଗୃରିଦିନ ବୀଭତ୍ସ ମାଂସ ମହୋତ୍ସବର ଭୋଜ୍ୟ ସାମଗ୍ରୀ ହୋଇ ସେ ତା'ର ଦେହ ଓ ମନକୁ ମାରି ଦେଇଥିଲି । ଶେଷରେ ତା ଜୀବନକୁ ହରାଇବାକୁ ପଡ଼ିଲି । ମର୍ଯ୍ୟାଦା ପୁରୁଷ ମହାମନ୍ତ୍ରୀ ନିଜର ପୁରୁଷାକାରର ସମ୍ମାନ ପାଇଁ ସବୁବେଳେ ସଜାଗ ରହୁଥିଲେ । ରାଜଧାନୀର ଏକ ନିରୁଛିଆ ରାସ୍ତାରେ ଏକ ଦୁର୍ଭାଗ୍ୟଜନକ ଦୁର୍ଘଟଣାଗ୍ରସ୍ତା ହୋଇ ତନୁଶ୍ରୀର ଅକାଳ ବିୟୋଗ ଉପଲକ୍ଷେ ଆଜି ତା ଆଶ୍ରମରେ ଏକ ଶୋକ-ସଭାର ବ୍ୟବସ୍ଥା କରାଗଲି । ଏହା ତାଙ୍କ ନିମିତ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଦିବସ ହୋଇଥିବାରୁ ବିଶେଷ କୌଶଳୀ ବିଧାୟକ ଏହାକୁ କିଛିଟା ସମାରୋହଯୁକ୍ତ କରିବାକୁ ଇଚ୍ଛା କରିଥିଲେ । ତନୁଶ୍ରୀର ଚିତାଭସ୍ମ ଉପରେ ସମବେତ ପୁଷ୍ପାଞ୍ଜଳି ଅର୍ପଣ କରାଗଲି । ତା'ର ସବୁଜ ସ୍ନିଗ୍ଧ ବ୍ୟକ୍ତିତ୍ୱ ଲାଳିତ୍ୟ ସଙ୍ଗୀତର ଝଙ୍କୃତିରେ ଉଛଳି ହୋଇ ଉଠିଲି । ବିଧାୟକ ଶୋକସଭାର ପୁରୋଧା ଆସନରେ ବସୁ ବସୁ ନିଜକୁ ସମ୍ଭାଳି ନପାରି କେବଳ ଖାଲି ଶେଷଯାଏଁ କାନ୍ଦିଥିଲେ । ମନ୍ତ୍ରୀଙ୍କର ଶୋକବାର୍ତ୍ତା ମଧ୍ୟ ସଭାରେ ପାଠ କରାଯାଇଥିଲି ।

ତା ପରଦିନ ଏକ ଅତି ଜରୁରୀ ଡାକରା ପାଇ ବିଧାୟକ ରାଜଧାନୀ ଆଡ଼େ ମୁହାଁଇଲେ । ସେ ଆକାଶରେ ମେଘ ଦେଖୁଥିଲେ । କିନ୍ତୁ ବର୍ଷା ହେବନି ବୋଲି ପ୍ରାୟ ନିଶ୍ଚିତ ଥିଲେ । ମହାମନ୍ତ୍ରୀଙ୍କର ଓଲଟପାଲଟ କଳାଯାଦୁ କୌଶଳର କରାମତି ଉପରେ ତାଙ୍କର ଅନେକ ଅନେକ ଅନୁଭୂତି ଥିଲା । ମହାମାନ୍ୟଙ୍କର ଅତିଥିମାନଙ୍କୀୟ ସାମର୍ଥ୍ୟକୁ ସେ କେବଳ ସ୍ୱୀକାର କରୁ ନଥିଲେ, ଭୟଙ୍କର ଭୟର ସହ ସମ୍ମାନ ଜଣାଉଥିଲେ ।

ମନ୍ତ୍ରୀଙ୍କର ମନ୍ତ୍ରଣା ଆଡ଼ାରେ କଥା ଛଡ଼ାଛଡ଼ି ହେଇ ଘମାଘୋଟ ଆଲୋଚନାର ଲଢ଼େଇରେ ସମସ୍ତେ ବ୍ୟସ୍ତ ଥିଲେ । ବିଧାୟକ ପହଞ୍ଚିଲାକ୍ଷଣି ସମସ୍ତଙ୍କ ଖାଇଯିବା ଆଖିର ଗୃହାଣି ତାଙ୍କ ଉପରେ କୁଢ଼େଇ ହେଇ ପଡ଼ିଲା । ପତ୍ରିକା ସମ୍ପାଦକ ଓଠକୁ ଚୁପି ଚୁପି ଅସ୍ୱାଭାବିକ ଗମ୍ଭୀରତାର ଏକ ସଂକ୍ଷିପ୍ତ ବିବୃତି ଦେଲେ । ବିଶ୍ୱବିଦ୍ୟାଳୟର ଗ୍ରୀନିବାସର ନିଯୁକ୍ତ ଗୁପ୍ତଚର ସଂସ୍ଥା ଖବର ସଂଗ୍ରହ କରିଛି ଯେ ବିଧାୟକଙ୍କ ଝିଅର ନେତୃତ୍ୱରେ ସେଠି ତନୁଶ୍ରୀର ମୃତ୍ୟୁରେ ଏକ ପ୍ରତିହିଂସାର ଲଘୁରୂପ କେନ୍ଦ୍ରୀଭୂତ ହେବାକୁ ଆରମ୍ଭ କରିଛି । ତନୁଶ୍ରୀକୁ ଧର୍ଷଣ କଲାପରେ ହତ୍ୟା କରାଯାଇଛି ବୋଲି ବିଧାୟକଙ୍କ ଝିଅ ଉତ୍ତେଜନା ଦେଉଛି । ଆଶ୍ରମର ଭିତର ରହସ୍ୟ ସମ୍ପର୍କରେ ତନୁଶ୍ରୀର କୌଣସି ଲିଖିତ ପ୍ରମାଣ ତା' ପାଖରେ ମହଜୁଦ ଅଛି ବୋଲି ଆମର ଖବର ସଂଗ୍ରାହକ ସଂସ୍ଥା ସନ୍ଦେହ କରୁଛି । ଏ ପରିପ୍ରେକ୍ଷୀରେ ବିଧାୟକ ତାଙ୍କର ବିହିତ ବ୍ୟବସ୍ଥା ସମ୍ପର୍କରେ ମତାମତ ଦେଇ କାର୍ଯ୍ୟାନୁଷ୍ଠାନର ସୂଚନା ଦିଅନ୍ତୁ । ସବୁ ଶୁଣି ସାରିଲା ପରେ ବିଧାୟକଙ୍କ ଚିନ୍ତା, ଭାବନା ସବୁ ଜମାଟବାନ୍ଧି ବରଫର ମୁଣ୍ଡା ପାଲଟି ଯାଇଥିଲା । ସମସ୍ତଙ୍କ ଷଣ୍ଢ ଆସୀ ଆକ୍ରମଣର ଢେଲା ପଥର ତାଙ୍କ ଉପରେ ଗଦେଇ ହେଇ ପଡ଼ୁଥିଲା । ବିଧାୟକ ତାଙ୍କର ଅନୁଭବ ଶକ୍ତିକୁ ଆସ୍ତେ ହରାଇ ବସୁଥିଲେ । ମନ୍ତ୍ରୀଙ୍କର ମର୍ଯ୍ୟାଦା, ଶାସନତନ୍ତ୍ରର ସମ୍ମାନ, ବିଧାୟକଙ୍କ ଇଜ୍ଜତ, ଆଶ୍ରମର ସୁନାମ ପାଇଁ ଅସହାୟ ଭୟଗ୍ରସ୍ତ ନିର୍ବାକ୍ ବିଧାୟକ ଶେଷ ନିଷ୍ପତ୍ତିକୁ ନୀରବରେ ସ୍ୱୀକାର କରି ବାରଣ ବଢ଼େଇର ବିଦାୟ ଦେଇ ଘରକୁ ଫେରିଲେ ।

ତା'ପରର ଇତିବୃତ୍ତି ଅତି ଗତାନୁଗତିକ । ମନ୍ତ୍ରୀଙ୍କର ଗୋଷ୍ଠିଶ୍ରମିକ ହାଁହଜୁର ଖବରକାଗଜମାନେ ଯେମିତି ଜଣାନ୍ତି, ଯେମିତି ବର୍ଣ୍ଣନା କଲେ

ଯେ ବିଶ୍ୱବିଦ୍ୟାଳୟର ଅମକେଇ ନାମ୍ନୀ ଛାତ୍ରୀ ଏସିଡ୍ ପିଇ ଆତ୍ମହତ୍ୟା କରିଛି । ବିଶ୍ୱବିଦ୍ୟାଳୟର ଉପାନ୍ତରେ ଥିବା ଏକ ଗୁପ୍ତାକୁଞ୍ଜ ଭିତରୁ ତା'ର ଶବ ଉଦ୍ଧାର କରାଯାଇଛି । ସେଠାରୁ ମଧ୍ୟ ଏକ ଫାଙ୍କା ଏସିଡ୍ ବୋତଲ ପୋଲିସ ଜବତ୍ କରିଛି । ଖବର ନେବାରେ ଜଣାପଡ଼ିଛି ଯେ ସେ ଏକ ପ୍ରେମ ବ୍ୟାପାରର ଫାଶିଆଷ୍ଟ ଥିଲା ଓ ସେଥିଲାଗି ପରିବାର ସହିତ ସମ୍ପର୍କ କଟେଇ ଦେଇ କିଛିଦିନ ହେଲା ଘରକୁ ଯାଉ ନଥିଲା । ଅବୈଧ ପ୍ରେମର ମନ୍ଦ ପରିଣତିର ସୂଚନା ତା'ର ସହପାଠିନୀମାନେ ପାଇ ପାରିଥିଲେ ଏବଂ ଡାକ୍ତରଙ୍କ ଆଶ୍ରୟ ନେଇ କଳଙ୍କରୁ ରକ୍ଷା ପାଇବାକୁ ମଧ୍ୟ ପରାମର୍ଶ ଦେଇ-ଥିଲେ । ସେ ହେଉଛି ରାଜ୍ୟର ବିଶିଷ୍ଟ ସାଧୁ ସଚ୍ଚୋଟ ଗାନ୍ଧିବାଦୀ ବିଧାୟକ ଅମକେଇଙ୍କର କନିଷ୍ଠା କନ୍ୟା ।

ବିଧାୟକଙ୍କ ସ୍ତ୍ରୀ ଘଟଣାର ପରେ ପରେ ତାଙ୍କ ଝିଅର ହାତଲେଖା ଚିଠି ଖଣ୍ଡେ ପାଇଲେ । ଚିଠିରେ ତା' ମୃତ୍ୟୁ ପୂର୍ବର ତାରିଖ ଥିଲା । ଚିଠିଟା ଏଇମିତି ଥିଲା—

ବୋଉ ଲୋ,

କିଛି ଭାବିବୁ ନାହିଁ । କିଛି ଭାବିବୁ ନାହିଁ ବୋଲି ଚିଠିରେ ଲେଖିଲେ ବି ତୁ ନ ଭାବି କ ରହି ପାରିବୁ ନି, ମୁଁ ଜାଣେ । ବାପାଙ୍କୁ ଏ ଚିଠି ଦେଖାଇ ତାଙ୍କୁ ଭାବିବାକୁ ଦେବା ଦରକାର ପଡ଼ିବ ନି । କାରଣ ଆଗରୁ ବେଶ୍ ଭାବିଚିନ୍ତି ସବୁ ଭାବିବା କାମ ସାରି ଦେଇଛନ୍ତି । ମୁଁ ଅନ୍ୟାୟକୁ ନ୍ୟାୟର ଦରବାର ଆଗକୁ ଓଟାରି ଆଣିବାକୁ ନିୟମ ଖାଇଛି । ମୁଁ ନିଜର ଜିଦ୍‌ଖୋର୍ ବୋଲି ତୁ ଯା ମୋ ଉପରେ ବିକ୍‌ଦାର ହେଉ । ମୁଁ ଜାଣେ, ମୋ' ଇଜ୍ଜତ ଓ ଜୀବନକୁ ଜାଳି ଦେଇ ଅସୁର ସର୍ଦ୍ଦାରମାନେ ମୋ' ଧୂଆଁର ଧୂପର ଅନ୍ୟାୟର ନାସନା ବାସ୍ନାକୁ ହୁରୁଡ଼େଇ ଦେବେ ।

ବୋଉଲୋ, 'ସୀମିତ ଜୀବନକୁ ଦେଇ ଅସୀମ ଜୀବନ ଅର୍ଜନ କରାଯାଏ । ମୁଁ ତାହା ହିଁ କରୁଛି ।

ବୋଉ, ଏ ଚିଠି ତୁ ନିଶ୍ଚୟ ଚିରି ପୋଡ଼ିଦେବୁ । ବାପା ମନ୍ତ୍ରୀ ହେଲେ ବହୁ ବିଭବ, ଅନେକ ସୁଖ ସୌଭାଗ୍ୟ ଓ ଜୀବନର କେତେ ନା

କେତେ ଚମତ୍କାରିତାର ତେଉରେ ମୋ' ଭଳି ଗୋଟେ ସାଧାରଣ ଝିଅର ସ୍ମୃତି ବଳେ ବଳେ ଧୋଇ ହୋଇଯିବ ।

ବୋଉ ତୋତେ ମୋ' ଗୁଣ । ତୋ' ରାଧାଗୋବିନ୍ଦ ଦ୍ୱାହି । ଏ ଚିଠି ଉପରେ କିଛି ଖୋଳତାଡ଼ କରିବୁନି । ଅଯଥା ଭୂଲ କରି ପରିବାରକୁ ଆସୁଥିବା ବାପାଙ୍କର ଅନେକ ଦିନର ଆକାଙ୍‌କ୍ଷିତ ଭବିଷ୍ୟତକୁ ଜାଳିପୋଡ଼ି ଜମ୍ପା ଘୁରଖାର କରି ଦେବୁ ନି ।

ଇତି

ତୋ' ଅମାନିଆ ଝିଅ

ସ୍ଥିତପ୍ରଜ୍ଞ ବିଧାୟକ ନିଷ୍ଠୁର ଝିଅର ଚିଠି ପଢ଼ିଥିଲେ । ପିତୃତ୍ୱର ଧାଏଁ ଧାଏଁ ଧକ୍କାଖାଇ ତାଙ୍କ ମନର କଂସାକବାଟ ହଲି ହଲି ହୁଗୁଳି ଯାଉଥିଲା । ସେ କବାଟର ଯୋଡ଼ ଜାଗାମାନଙ୍କରେ ନିଷ୍ଠୁରତାର ନିହାଣିଆ କଣ୍ଟାର ବଡ଼ ବଡ଼ ଗୋବ ସବୁ ନିର୍ବିକାରରେ ବାଡ଼ାଇ ବାଡ଼ାଇ ଯୋଗାଣ କମ୍ପା ପରିବହନରେ ମନ୍ତ୍ରୀତ୍ୱ ପାଇ ସାରିଲା ପରେ ପରବର୍ତ୍ତୀ ପରିସ୍ଥିତିର ବ୍ୟବଚ୍ଛେଦ କରି ଲାଭକ୍ଷତିର ଅଙ୍କ କଷୁଥିଲେ ।



# ନିଃସଙ୍ଗ ଅଶ୍ୱାରୋହୀ

ଏକଥା ସତ, ଦେବସ୍ଥାନକୁ ସାହିତ୍ୟିକର ସମ୍ମାନ ଦେଲେ ସମ୍ମାନର ଆଦୌ ଅସମ୍ମାନ ହେବନି । କିନ୍ତୁ ସେ ସାହିତ୍ୟିକର ପଦବୀ-ପଦକ ପିନ୍ଧିବାକୁ ବା ଲଟକାଇବାକୁ ବିଲକୁଲ ଅମଙ୍ଗ । ତାକୁ ସାହିତ୍ୟିକ ବୋଲି କହିବା ଏ କେମିତି ଡାକଦେଲେ ସେ ହସି ହସି ଗଡ଼ିଯାଏ । ତା ହସର ନିଷ୍କପଟ ଛନ୍ଦପାତରୁ ସ୍ପଷ୍ଟ ଜଣାଯାଏ ଯେ ମୋ ସାହିତ୍ୟିକ ସମ୍ବୋଧନଟାକୁ ସେତ ପସନ୍ଦ କରୁନି, ତା' ଛଡ଼ା ସେ ଭଲକରି ବୁଝିପାରୁଛି ଯେ ମୁଁ ତାକୁ ଶ୍ରୀତମଜ ତେଲେଉଛି । ସେ ଧାଡ଼ିଏ ବି କୌଣସି ପତ୍ର ପତ୍ରିକାରେ ଲେଖିନି କି ପଦିଏ ବି କୌଣସି ସାହିତ୍ୟିକ ଆସରରେ କେବେ ମୁହଁଖୋଲି କହିନି । କିନ୍ତୁ ମୋ ଜାଣିବାରେ ଆଖପାଖରେ ଏପରି କୌଣସି ସାହିତ୍ୟ-ଅନୁଷ୍ଠାନ ଅନୁଷ୍ଠିତ ହେଉନି, ଯେଉଁଠି ସେ ଆପେ ଆପେ ନ ପହଞ୍ଚିଛି ବା ବଳେ ବଳେ କିଛି ନକରିଛି । ଏଭଳି ସବୁ ଅନୁଷ୍ଠାନର ସାଙ୍ଗଠନିକ ଧନ୍ଦାରେ କିଛିଟା ଉପର ଦେଖାଣିଆ ହାଲ୍‌କା କାମ କରି, କାମ କରୁଛି ବୋଲି ଫୁଟାଣି ବଖାଣି ସାହିତ୍ୟିକ ହେବାର ଆଜିକାଲିକା କୌଶଳକୁ ତାକୁ ଧରେଇ ଦେଲେବି ସେ ଧରିପାରେନା । ସେ ସେରକମ ଆତ୍ମପ୍ରତିଷ୍ଠା କାରବାରରେ ଧରା ଏନି, କହିଲେ ଠିକ୍ ହେବ ବୋଧହୁଏ । କେବେକେବେ କୌଣସି ସାହିତ୍ୟରଥୀଙ୍କ ନିର୍ଦ୍ଦିଷ୍ଟ ଭାଷଣ ଉପରେ ତାର ପ୍ରତିକ୍ରିୟା ଜାଣିବାକୁ ଘରେ ତାକୁ ଅନୁରୋଧର ଫେରରେ ପକାଇ ଉତ୍ତର ପାଇଁ ମୁଁ ଜିଦ୍‌କରେ । ସେ ତାର ନିର୍ମୋକହୀନ ନିର୍ମମ ମନ୍ତବ୍ୟ ଓ ତାର ମୌଳିକ ଅଭିମତକୁ ନିର୍ବିଘ୍ନରରେ ଇଚ୍ଛାହେଲେ କହିପକାଏ । ଆଉ ତାରି ଚିନ୍ତାକୁ ଯଥାର୍ଥ୍ୟ ଦେବାକୁ ଯେମିତି ସେ ବହୁ ପାଠିତା ଓ ବହୁ ଚିନ୍ତନର ଯୁକ୍ତିକୁ ଉପସ୍ଥାପିତ କରେ, ସେଥିରେ ମୁଁ କେବଳ ବିସ୍ମିତ ହୁଏନି, ଅଭିଭୂତ ହୁଏ । ବେଳେବେଳେ ମୋର ଲେଖା ଉପରେ ସେ ଏପରି ଗୁଣାତ୍ମକ ବିଶ୍ଳେଷଣ ଦିଏ ଯେ ମୁଁ ଯେମିତି ଗର୍ଭବତୀ ତାତ୍ତ୍ୱିକ ଚେତନାର ଅନୁଭୂତି ନେଇ ଲେଖିଛି ବୋଲି, ମୋର ମନେ ହୁଏନା । ଆଉ ମଧ୍ୟ ମହିମାବନ୍ତ ସାହିତ୍ୟ ବଡ଼ପଣ୍ଡାଙ୍କ ବହୁ ବାହାବାହାର ଜୁମୁରାଖଂଜାକୃତକୁ ନିର୍ମମ ଭାବରେ ବ୍ୟବଚ୍ଛେଦ କରି

ଉଡେଇ ଦିଏ ଯେ, ମୁଁ ଚମକି ପଡ଼େ । ତାର ଅନୁଧ୍ୟାନ ଅନୁପ୍ରବେଶ ଓ ଅନୁଚିନ୍ତନର ଚମତ୍କାରିତା ଦେଖି ମୁଁ ଚମତ୍କୃତ ହୁଏଁ । କେବେ କେବେ ବିଶେଷ ଧରଣର ସାହିତ୍ୟ ଅନୁଷ୍ଠାନମାନଙ୍କୁ ସ୍ୱନାମଧନ୍ୟ ସାହିତ୍ୟ ସମ୍ରାଟ-ମାନଙ୍କୁ ବରଣ କରି ଆଣିବାକୁ ପଡ଼େ । ମୁଁ ଅନେକଥର ପରିସ୍ଥିତି ସୃଷ୍ଟିକରି ଦେବସ୍ମାନଙ୍କୁ ସେମାନଙ୍କ ସହିତ ପରିଚୟ କରାଇ ଦେବାକୁ ଚେଷ୍ଟା କରିଛି । କିନ୍ତୁ ସବୁଥର ସେ ମତେ ଧରା ନଦେଇ ଫାଙ୍କି ଦେଇଛି । ଫଟୋ-ଉଠିବା କଥାଥିଲେ ସେ ଆଗରୁ ବାଟ କାଟିଥାଏ । ଅନ୍ୟମାନେ ଫଟୋସ୍ଥ ହେବାକୁ କେମିତି ଆତୁର ହୋଇ କେମେରା ଆଗକୁ ବ୍ୟସ୍ତ ବିକଳ ହୁଅନ୍ତି, ସେ ବିଷୟରେ ମୋର ବହୁ ହାସ୍ୟକର ଅନୁଭୂତି ରହିଛି । କିନ୍ତୁ ଦେବସ୍ମାନ ପରି ନିଜକୁ ନିଜ ଖୋଳପା ଭିତରେ ଲୁଚାଇ ରଖି ଅପ୍ରକାଶ୍ୟ ହେବାର ଚିନ୍ତାନାୟକ ମିଳିବା ମୁସ୍କିଲ । ଆଜିର ନିଜ ପ୍ରଚାର ଓ ଆତ୍ମପ୍ରସାରର ପୃଥିବୀରେ ଦେବସ୍ମାନ ଯେ କାହିଁକି ନିଜକୁ ସଙ୍କୁଚିତ କରି ନିଭୃତ ହୋଇ ଉଠୁଛି, ମୁଁ ବୁଝିପାରେନା ।

ଦେବସ୍ମାନ କଥା ଭାବିଲା ବେଳେ ମୋର ଆଉ ଜଣକ କଥା ମନେ ପଡେ । ମୋର ଜଣେ ସାହିତ୍ୟିକ ହେବା ବ୍ୟାଧି ଭୋଗୁଥିବା ବନ୍ଧୁ ଅନେକ-ଥର ଅନୁରୋଧ କଲେ, ଶେଷରେ ଅଭିଯୋଗ କଲେ । ତାଙ୍କ ଉଦ୍ଦେଶ୍ୟର ସ୍ୱର ହେଉଛି, ମୁଁ ତ ସାହିତ୍ୟ ସଭାମାନଙ୍କୁ ଏତେ ଯାଉଛି, ତାଙ୍କୁ ବେଳେବେଳେ କେଉଁଠି କେମିତି ପହଞ୍ଚାଇ ଦେଲେ କଣ ହାନି ହୋଇଯାନ୍ତା ? ମୁଁ ତାଙ୍କୁ ସାଙ୍ଗରେ ଅନୁଷ୍ଠାନମାନଙ୍କୁ ନେବାକୁ ଆରମ୍ଭ କରିଦେଲି । ସମସ୍ତଙ୍କ ଆଖିରେ ପଡ଼ିବାକୁ ଘର ପହଁରିବା, ଦରିପାରିବା, ଟେବୁଲ ମୁଣ୍ଡେଇବା, ଫୁଲଦାମି ସଜେଇବା, ମାଇକ୍ ଟେକିବା, ଗୃ. ବୋହିବା, ଅର୍ଥାତ୍ ଯିଏ ଯାହା ବରାଦ କଲା, ସବୁ ଅଭିବାଧ ଆଜ୍ଞାବହରୂପେ କରି ଗ୍ଲେଲେ । ସାଧାରଣରୁ ସ୍ୱୀକୃତି ଆସିଲା ଯେ ସେ ଜଣେ ଅନୁଗତ ସାହିତ୍ୟଭକ୍ତ ବ୍ୟକ୍ତି । ଯାହାହେଉ ବନ୍ଧୁଙ୍କର ଗୋଡ଼ ଟିକିଏ ଠାକିଗଲା । ସେ ଭରସାର ନିଃଶ୍ୱାସ ମାରିଲେ । ପରେ ପରେ ବନ୍ଧୁଙ୍କର ବକ୍ତାହେବାର ବିଦ୍ଧା ଛୁଟିକା ଆରମ୍ଭ ହୋଇଗଲା । ତାଙ୍କର ବିନା ଦ୍ୱିଧାରେ ସମସ୍ତଙ୍କ ଆଦେଶର ଶିଷ୍ୟ ବନିଯିବାର ଅନନ୍ୟ ନିଉନତା ପାଇଁ ସମସ୍ତେ କେବଳ ତାଙ୍କୁ ଶ୍ରଦ୍ଧା କରୁନଥିଲେ, ଦୟାବି କରୁଥିଲେ । ଅଧିକନ୍ତୁ ଫୁଲମାଳ ଆସିପାରିନି,—

ଖିଆଲ ନାହିଁ, ଟେବୁଲକୁ ଥରଟା କେହି ଆଣି ନାହାନ୍ତି, ଅମକେଇ ମୁଖ୍ୟ ଅତିଥିଙ୍କୁ ଆଣିବା କଥା,—କେହି ଯାଇ ନାହାନ୍ତି ଇତ୍ୟାଦି ଇତ୍ୟାଦି ଭୁଲଭଟକାର ଅବଶୋଷ ଆସିଲାକ୍ଷଣି ସେ କେବଳ ଶ୍ରମଦାନ ପାଇଁ ବାହାର ପଡ଼ୁ ନଥିଲେ, ସେ ସନ୍ଧାନ୍ତରେ ସେ ହାତରୁ କଣ୍ଟି ଖର୍ଚ୍ଚ ବି କରି ପକାଉଥିଲେ ତେଣୁ ମଂଚ ଉପରକୁ ଗୋଡ଼ ଉଠାଇବାର ସୁବିଧା ହାସଲ କରିବାକୁ ଅସୁବିଧା ହେଉନ । ସମସ୍ତେ ଭାବଲେ ଲୋକଟା ଏତେ ଖଟୁଛି । ତା ମନର ଅରମାନ ମେଂଣ୍ଟାଇବାକୁ ସୁଁପଦ କହୁ । ତାଙ୍କର ଗୋଟେ ଦୁଇଟା ଭାଷଣ ଶୁଣି ସାରଲା ପରେ ମୁଁ ପ୍ରମାଦ ଗଣିଲି । ନଶୁଣିବା ପାଇଁ ନିଜକୁ ଘୁଞ୍ଚେଇ ନେବାର ଜୁ ନଥିଲା । ତାଙ୍କ ଭାଷଣ ଶୁଣିବା ପାଇଁ ମୁଁ ବାଧ ବୋଲି ସେ ଧରିନେଇ ଥିଲେ, ମୋର ବି ତାଙ୍କ ଗୁଲଖଟି ବସ୍ତାନ ନଶୁଣିବାକୁ ସାଧ ନଥିଲା । ନଚେତ୍ ହୁଏତ ସଭାତରେ ମୋ ସହିତ ଫୌଜଦାରି କରିବାର ବହୁ ସମ୍ଭାବନା ବି ଥିଲା । ତାଙ୍କର ଅଭିଭାଷଣରେ ସେ ଯେଉଁ ତାଙ୍କର ଗଞ୍ଜେଇ—ଧୂଆଁ ସମ୍ବଳିତ କମ୍ବଧନ୍ତୀର ଆକାଶଛୁଆଁ ଭାଷ୍ୟ ସବୁ ଉଦ୍‌ଗାର କରୁଥିଲେ, ସେଥିରେ ତାଙ୍କୁ ଉସୁକାଇ ଅନ୍ୟମାନେ ଯେତିକ ଉପଭୋଗ କରୁଥିଲେ, ମୁଁ ବନ୍ଧୁଙ୍କର ଦାୟିତ୍ୱ ସ୍ଥିତି ପାଇଁ ସେତିକ ମନେ ମନେ ଅନୁଭୋଗ କରୁଥିଲି ।

ଥରେ କାଳିଦାସଙ୍କ କାବ୍ୟକୃତି ଶୀର୍ଷକ ଆଲୋଚନାରେ ଅଂଶ- ନେଇ କାଳିଦାସଙ୍କ ଅଭିମାନବୀୟ ବ୍ୟୁତ୍ପତ୍ତିର ଅସଲ ରହସ୍ୟକୁ ବନ୍ଧୁ ମୋର ଏଇମିତି ଉଦ୍‌ଘାଟନ କରିଥିଲେ । ଯଥା— କାଳିଦାସଙ୍କ ସମୟରେ ତାଙ୍କ ପଣଗୋସାପଙ୍କ ଅଣଗୋସାପ ଅର୍ଥାତ୍ କାଳିଦାସଙ୍କ ଅମଳରେ ତାଙ୍କ ପୂର୍ବ ପୁରୁଷ ପର୍ଯ୍ୟାୟର ,ଯେଉଁ ଗୋସାପ ମହାପୁରୁଷ ଦେହ ଧାରଣ କରିଥିଲେ, ସେ ଏକଦା ନିଘଞ୍ଚ ଜଙ୍ଗଲ ମଧ୍ୟରେ ପଦଯାତ୍ରା କରି ପଶୁ-ଶୁଦ୍ଧି- ବ୍ରତ ଗ୍ରହଣ ପୂର୍ବକ ସେମାନଙ୍କ ଘୃଣ୍ୟ ପଶୁତ୍ୱକୁ ହରଣ କରି, ବେଳେବେଳେ ବରଣ କରି, ସେମାନଙ୍କୁ ମଣିଷ ସ୍ତରକୁ ନିଜକୁ ନିମଗ୍ନ ରଖିଥିଲେ । କାଳିଦାସ ନିଜ ପତ୍ନୀଙ୍କଠାରୁ ଅବଜ୍ଞା ଓ ଅପମାନ ପାଇ ଆପଣା ମୂଢ଼ତ୍ୱକୁ ଧିକ୍‌କାର କରୁଁ କରୁଁ, ନିଜ ଜୀବନ ପ୍ରତି ବୀତସ୍ପୃହ ହୋଇ ବୁଲୁ ବୁଲୁ ସେଠି ପହଞ୍ଚି ଗଲେ । ତଥାକଥିତ ବନ୍ଧୁଙ୍କର ମହା ଗୋସାପ ଅନ୍ୟମନ-ପ୍ରବେଶ- ବିଦ୍ୟା ସାଧି ସିଦ୍ଧ ହୋଇ ସାରିଥିଲେ । ବିଚରା ଦାସଙ୍କ ହୀନମନ୍ୟତା ଓ

ବିଷଣ୍ଣତାକୁ ଧ୍ୟାନବଳରେ ଅନୁଭବ କରି ଅନୁଗ୍ରହ ସ୍ୱରୂପ ତାଙ୍କୁ ନୀଳ ସରସ୍ୱତୀ ମହାମନ୍ତ୍ର ଜପିବାର ବିଧି ବିଧାନ ବତାଇ ସରସ୍ୱତୀଙ୍କ ଆଶ୍ରୟ ନେବାକୁ ନିର୍ଦ୍ଦେଶ ଦେଇଥିଲେ ଓ ମନ୍ତ୍ର ଦୀକ୍ଷାର ଅଧିବାସ ପର୍ବରେ ନିଜେ ବିଜେକରି ଦାସଙ୍କୁ ବିଶେଷ ଆଶୀର୍ବାଦ ଦ୍ୱାରା ଅଭିମନ୍ତ୍ରିତ କରିଥିଲେ । ଆପଣମାନେ ଜାଣନ୍ତି, କାଳିଦାସ ସିଦ୍ଧିଲାଭ ପରେ କିପରି ମହା ମୂର୍ଖରୁ ମହାକବି ରୂପେ ଆତ୍ମା ପରିବର୍ତ୍ତନ କରିପାରି ଥିଲେ । ଅଧିକନ୍ତୁ ଏହି କିମ୍ବଦନ୍ତୀକୁ ଆଶ୍ରୟ କରି ସେ ଏକ ବହୁ ପରିଶ୍ରମ ସାପେକ୍ଷ ଗବେଷଣାତ୍ମକ ପୁସ୍ତକ ପ୍ରକାଶ ପାଇଁ ବର୍ତ୍ତମାନ ଅତି ବ୍ୟସ୍ତ ଅଛନ୍ତି ବୋଲି ଜଣାଇ ଶ୍ରୋତୃ ମଣ୍ଡଳୀଙ୍କ ଚପାହସ ଯୁକ୍ତ ବହୁ ତାଳି ସଂଗ୍ରହ କରି ଏକ ବିଶିଷ୍ଟ ବକ୍ତାର ବ୍ୟକ୍ତିତ୍ୱକୁ ନିଜ ଭିତରେ ଭର୍ତ୍ତି କରୁଥିଲେ ।

ପୃଥିବୀରେ ଓଡ଼ିଆରେ ସାଂସ୍କୃତିକ ପରମ୍ପରା ଉପରେ ବିଶିଷ୍ଟ ବିଦ୍ୱାନମାନଙ୍କୁ ନେଇ ଏକ ଆଲୋଚନାଚକ୍ରରେ ଭାଗନେବାକୁ ସୁଯୋଗ ପାଇ ସେ କହୁଁ କହୁଁ କହି ପକାଇ ଥିଲେ ଯେ, ସେ ଏକ ପରମ୍ପରା ସମ୍ପନ୍ନ, କ୍ଷତ୍ରିୟ ପରିବାରକୁ ଜାଣନ୍ତି । ତାଙ୍କ ପରିବାରରେ କେହି କାହାକୁ 'ତୁମେ' ବୋଲି ସମ୍ବୋଧନ କରନ୍ତି ନାହିଁ । ଏହା ତାଙ୍କର କୌଳିକ ରୀତି । ସେ ତାଙ୍କର ଅନେକ ଆୟାସସାପେକ୍ଷ ଅନୁଧ୍ୟାନରୁ ଅବଗତ ହେଲେ ଯେ ସେହି ପରିବାରର ଜଣେ ବହୁ ପୂର୍ବର ପୂର୍ବଜ ତାଙ୍କର ଅସୀମ ଶୌର୍ଯ୍ୟ ପାଇଁ ସର୍ବଜନ ପୂଜ୍ୟ ଥିଲେ । ସେତେବେଳେ କଳିଙ୍ଗ ତାର ନୌବାଣିଜ୍ୟର ପକ୍ଷ ବିସ୍ତାର କରି ଯକ୍ଷର ସମ୍ପତ୍ତି କରଗତ କରୁଥାଏ । ଜନୈକ ଅତି ଧନୀ ସାଧବର ପଣ୍ୟବାହୀ ଜାହାଜ ସମୁଦ୍ର-ଯାତ୍ରା କରୁଥାଏ । ସେହି ଶୌର୍ଯ୍ୟଶାଳୀ ମହାବଳୀ କ୍ଷତ୍ରିୟ ଶ୍ରେଷ୍ଠ ଜାହାଜର ରକ୍ଷଣ ଦାୟିତ୍ୱ ନେଇଥାନ୍ତି । ଜଳ-ଦସ୍ୟୁଙ୍କ କବଳରୁ ଜାହାଜକୁ ସୁରକ୍ଷିତ ରଖିବାକୁ ଜାହାଜରେ ନିରାପତ୍ତା ବାହିନୀର ବ୍ୟବସ୍ଥା ସେ ସମୟରେ ପ୍ରଚଳିତ ଥିଲା । ହଠାତ୍ ଏକ ନୀଳ-ତିମିଙ୍ଗିଳ ଜାହାଜକୁ ଆକ୍ରମଣ କଲା । ଜାହାଜ ବିପନ୍ନ ହୋଇ ଉଠିଲା ଏବଂ ନାବିକମାନେ ନିଶ୍ଚିତ ମୃତ୍ୟୁକୁ ଅପେକ୍ଷା କରି ରହିଲେ । କ୍ଷତ୍ରିୟ ପ୍ରବର ନିର୍ଦ୍ଦିଶ୍ଚରରେ ସମୁଦ୍ର ମଧ୍ୟକୁ ଲମ୍ଫ ମାରିଲେ ଓ ତିମିଙ୍ଗିଳ ସହିତ ପ୍ରାଣମୂର୍ଚ୍ଛା ଲଢ଼େଇ କରି ତାକୁ ହତ୍ୟାକଲେ ସତ, ନିଜେ ଆଉ ବାହୁଡ଼ି ଆସି ପାରିଲେ ନାହିଁ । ସମୁଦ୍ର ସମ୍ରାଟର ଉତ୍କଟ ଆଘାତର ପରିଣତି ସ୍ୱରୂପ ବିଜୟ ପରେ

ପରେ ସେ ବୀର-ମୃତ୍ୟୁ ବରଣ କଲେ । ତା ପରେ, ସେହି ଉପ୍ପବନ୍ଧ ଇତିହାସ ପରର ବୀରଶ୍ରେଷ୍ଠଙ୍କ ପରିବାରରେ ତମିଳଭ ପ୍ରତି ଏକ ଉପ୍ପଙ୍କର ଘୃଣାଜାତ ହେଲା । ସେମାନେ 'ତମି' ଶବ୍ଦ ସହ ସାଦୃଶ୍ୟଥିବା "ତୁମେ" ଶବ୍ଦ ବ୍ୟବହାର କରିବାକୁ ମଧ୍ୟ କୁଣ୍ଠାବୋଧ କଲେ । ତେଣୁ ପରମ୍ପରା କ୍ରମେ ସେମାନେ କେବେ କାହାକୁ ଆଜଯାଏଁ 'ତୁମେ' ବୋଲି ଡାକନ୍ତି ନାହିଁ ।

ଏସବୁ ହେଲା ଜଣେ ବନ୍ଧୁଙ୍କର ସାହିତ୍ୟିକ ସାଜବାର ପରବର୍ତ୍ତୀ ପ୍ରତିଘର ନମୁନା । କିନ୍ତୁ ଦେବସ୍ନାନ ଥିଲା ଭିନ୍ନ ବ୍ୟକ୍ତିତ୍ୱର ମଣିଷ ।

ଦିନେ ଦେବସ୍ନାନ ସାଙ୍ଗରେ ନିଃସଙ୍ଗତା ଉପରେ ତା ଘରେ ବସି ଆଲୋଚନା କରୁଥିଲି । ତାର କହିବାର କଥା ଥିଲା ଯେ ସେ ଅନେକ ସାହିତ୍ୟ ସମାବେଶକୁ ଯାଉଛି । ସବୁଠି ସମସ୍ତେ ମନ୍ତବ୍ୟ ଦେଉଛନ୍ତି ଯେ ମଣିଷ ଆଜି ଅତିମାତ୍ରାରେ ନିଃସଙ୍ଗ ହୋଇ ପଡ଼ୁଛି । ଆଶ୍ରୟଶୂନ୍ୟ ମଣିଷ ନିର୍ଧୁମ ଖରାବେଳେ ପ୍ରାଣାନ୍ତକ ହୋଇ ତା ଜୀବନର ଓଜନିଆ ବସ୍ତାକୁ ମୁଣ୍ଡରେ ଲଦି ନିଗୁଛିଆ ରାସ୍ତାରେ ବେଦମ ଦୌଡ଼ୁଛି । ସେ ଠିକଣା ପାଉନି, କେଉଁଠି ତା ବୋଝକୁ ସେ ଓହ୍ଲାଇ ଦେବ । ସ୍ୱାର୍ଥବଶ ସମାଜର କଂସାକବାଟ ସବୁବେଳେ ତା' ପାଇଁ କିଳାହୋଇ ରହିଛି । ଇତ୍ୟାଦି ଇତ୍ୟାଦି ବହୁ ଚିନ୍ତକଙ୍କର ହୋହଲ୍ଲା କରି ଆଜିର ସାହିତ୍ୟିକ ନିଃସଙ୍ଗତା ଉପରେ ଟିପ୍ପଣୀ ଦେଉଛି । କିନ୍ତୁ ସେ ବୁଝିପାରୁ ନଥିଲା, ମଣିଷ କେମିତି ନିଃସଙ୍ଗ ହେଉଛି । ପ୍ରତି ମୁହୂର୍ତ୍ତରେ ଏ ଧଡ଼ଡ଼ା ପୃଥିବୀ ଉପରେ ମଣିଷ ଶିଶୁର କଚଡ଼ା ବର୍ଷା ଚାଲିଛି । ମଣିଷର ପାହାଡ଼ ଯେମିତି କୁଢ଼େଇ ହୋଇ ପଡ଼ୁଛି, ହୁଏତ ଏ ପୁରୁଣା ପୃଥିବୀର ଫୁରୁସା ମାଟିସବୁ ଧସିପଡ଼ିବ ଏବଂ ଟିକିଟିକି ହୋଇ ମହାଶୂନ୍ୟରେ ପଇଁତରା ମାରିବ । ଜଣଜଣଙ୍କ ଘରେ ହୁସିଆର ହୋଇ ନ ଚାଲିଲେ ଗୋଟେଦିନଠା ଛୁଆଙ୍କୁ ଝୁଣ୍ଟି ପଡ଼ିବାକୁ ପଡ଼ିପାରେ । କିନ୍ତୁ ଅତିସ୍ତରର ଅନୁଭୂତିପରିପୂର୍ଣ୍ଣ ଦିବ୍ୟଦ୍ରଷ୍ଟା ସାହିତ୍ୟିକ ଆଜି ଚଣ୍ଡିପଣଠାଇ ଚେତାବନୀର ଚିତ୍କାର ଛାଡ଼ୁଛି ହୁସିଆର ହୁଅରେ ନିଃସଙ୍ଗ ମଣିଷ । କଥାଟା କଣ ? ଏ ନିଃସଙ୍ଗତାର ଭୂତକୁ ସାହିତ୍ୟିକମାନେ କେଉଁ ନିଗୁଛିଆ ଅଶ୍ୱତ୍ଥ ଗଛ ଡାଳରୁ ଆମଦାନୀ କଲେ, ତା ଛାଇକୁ ଯେତେ ଓଲଟପାଲଟ କଲେବି ସେ ବୁଝିପାରୁ ନଥିଲା । କେତେଦିନ ତଳେ ଜଣେ ନିଃସଙ୍ଗ

ଅଶ୍ୱାରୋହୀ ସାଙ୍ଗରେ ତାକୁ କିଛିବାଟ ଯିବାକୁ ପଡ଼ିଥିଲା । କିନ୍ତୁ ସମସ୍ତଙ୍କର ଖାପଛଡ଼ା ଅନୁଭୂତି ଭିତରୁ ତା ବହୁଦିନର ଉତ୍ତରହୀନ ପ୍ରଶ୍ନର ସେ କିଛିଟା ସମାଧାନ ପାଇଲା । ମୁଁ ଭାରି ଉତ୍ସୁକ ହୋଇ ଉଠିଥିଲି । ମୁଁ ତ ଦେବ-ସ୍ନାନକୁ ଏକ ନିଃସଙ୍ଗତାର ଅଜବ୍ ଜୀବ ବୋଲିନିଜେ ଭାବି ଆସୁଥିଲି । ତାର ମୁହଁରୁ ମୋ ଭିତରର 'କାହିଁକି'ର ଉତ୍ତର ଆରମ୍ଭ ହେବା ଦେଖି ମୁଁ କିଛି ଯୁକ୍ତିତର୍କ ନକରି ନୀରବରେ ତାକଥା ଶୁଣିବାକୁ ଲାଗିଲି ।

ଦେବସ୍ନାନ ତା କଥା ଆରମ୍ଭ କଲା । ସେ ଜଣେ ପଦସ୍ଥ ଭଦ୍ରବ୍ୟକ୍ତିଙ୍କ ଘରକୁ ତାଙ୍କ ପୁଅ ବିବାହ ଉତ୍ସବର ନିମନ୍ତ୍ରଣ ରକ୍ଷା କରିବାକୁ ଯାଇଥିଲା । ଭୋଜିପର୍ବର ଅତିଥି ସତ୍କାର ସରୁ ସରୁ ଡେରି ହୋଇଗଲା । ଭଦ୍ରଲୋକଙ୍କ ବାସ ଭବନକୁ ଯିବାପାଇଁ ରାସ୍ତାର କିଛି ଅସୁବିଧା ନଥିଲେ ବି ତାଭଳି ଏକ ସ୍ୱଯାନବିହୀନ ଅତିଥି ପକ୍ଷେ ଫେରିବାଟା କିଛି ସୁବିଧା-ଜନକ ନଥିଲା । ରାତି ତ ବେଶୀ ହୋଇ ଯାଇଥିଲା । ତାପରେ ବସ୍ ଷ୍ଟାଣ୍ଡରେ ପହଞ୍ଚିବାକୁ ହେଲେ ଗୁରିମାଇଲ ରାସ୍ତା ଗୃଲିକରି ହେଉ ବା ରିକ୍ସାରେ ହେଉ ଯିବାକୁ ହେବ । ରିକ୍ସାବାଲାଙ୍କ ଜୁଲମ କଥା ତାକୁ ଅମାଲୁମ ନୁହେଁ । ଅସମୟ ଓ ଆବଶ୍ୟକତାକୁ ଠଅରେଇ ନେଇ ସେମାନେ ଇଚ୍ଛାନୁସାରେ ଭଡ଼ା ହାଙ୍କନ୍ତି । ଏପରି କରିବାଟା ଆମର ଜାତିପ୍ରକୃତି । ବିପଦଗ୍ରସ୍ତକୁ ମିଛ ଅସୁବିଧାର ଦୋହାଇଦେଇ ତାଠୁଁ ବେଫିକର ଫାଇଦା ଉଠାଇବା ଆମର ସ୍ୱାଭାବିକ ବିଶେଷତ୍ୱ ବୋଲି ଅନ୍ୟଦେଶ ଆଗରେ ଆମର ଇତିହାସ ରହିଛି । ଉଦାହରଣ ଖାଦ୍ୟାଭାବ ଓ ଲୋକର ଉପୀଡ଼ିତତା ବିକଟରେ ଗୋଦାମବାଲା ଏଇ ସରିଗଲା ବୋଲି ଦରଦ ଦେଖାଇ ଚଢ଼ାଦାମକୁ ଅପେକ୍ଷା କରନ୍ତି । ମୁମୂର୍ଷୁର ପ୍ରାଣସଙ୍କଟ ବେଳେ ଚିକିତ୍ସାବିତ୍ପାଖ ବିଭିନ୍ନ ଆଳରେ ଯିବାକୁ ବାରମ୍ବାର ନାରାଜ ହେଇ ପ୍ରାର୍ଥୀର ପକେଟକୁ ଅଟକାଇ କରି ସବୁବେଶୀ ଲୁଟିନେବାକୁ ଟିକିଏ ବି ଶଙ୍କିଯାଆନ୍ତିନି । ପଇସା ବ୍ୟବସାୟୀ ଅଭାବଗ୍ରସ୍ତର ଦାଇନ ଦେନା କରୁକରୁ ବିଚରାର ଦୁର୍ଦ୍ଦଶା ପାଇଁ ଆହା ଆହାର ଅବଶୋଷ ଶୁଣାଇ ଯେତେବେଶୀ ସମ୍ଭବ ତା ସର୍ବସ୍ୱକୁ ଅକ୍ତିଆରକୁ ନାହିଁ ନାହିଁର ଅନେକ ଅନୁନୟ କରନ୍ତି । ହଁ, ସେ ଉପଯୁକ୍ତ ଦେୟଠୁଁ ଟିକିଏ ଅଳ୍ପବେଶୀ ପଇସାରେ ରିକ୍ସା ଖଣ୍ଡେ ଅନିସା କରୁଥାଏ । ଜଣେ ନିମନ୍ତ୍ରିତ ଭଦ୍ରମହୋଦୟ କିଛିଗୋଟେ ଚିନ୍ତାର ଅତ୍ୟାଗ୍ରହରେ ବ୍ୟସ୍ତ

ହୋଇ ଏପାଖ ସେପାଖ ହେଉଥିବାର ଦେଖିଲା । ସେ ଆସ୍ତେ ତାଙ୍କ ପାଖକୁ ଗଲା । ପୋଷାକର ସମ୍ଭାର ଓ ମୁହଁର ଗମ୍ଭୀରତାରୁ ସେ ଅନୁମାନ କଲାଯେ ବୟସ୍କ ମହାଶୟ ଜଣେ ଆଭିଜାତ୍ୟର ମଣିଷ । ତାଙ୍କର ଯିବାର ଅଛିକି ବୋଲି ସେ ମାନ୍ୟତାର ସହ ତାଙ୍କୁ ପଚାରି ଦେଲା । କାରଣ ଦୁଇଜଣ ହେଲେ ଚଢ଼ା ରିକ୍‌ସା ଭଡ଼ାଟା ଅଧା ଦେବାକୁ ପଡ଼ନ୍ତା । ସେ ମହୋଦୟଙ୍କ ମୁହଁକୁ ଭଲକରି ଦେଖି ସାରିଲା ପରେ ତାର ମନେ ପଡ଼ିଗଲା ଯେ ଗ୍ରୋଲ୍ପ ସଭାରେ ପରିଚୟ ପ୍ରଦାନ ବେଳେ ତାଙ୍କୁ ଜଣେ ଅବସରପ୍ରାପ୍ତ ଆଇ.ଏ. ଏସ୍ ଅଫିସର୍ ବୋଲି ଚିହ୍ନେଇ ଦିଆଯାଇଥିଲା । ଆଉ ମଧ୍ୟ ସେ ଜାଣିଥିଲା ଯେ ସେ ମହାଶୟଙ୍କ ଘରକୁ ଯିବା ରାସ୍ତାରେ ତାର ନିଜର ଘର ପଡ଼ିବ । ଭଦ୍ର ମହୋଦୟ ଓଠକୁ ଚୁପି ଚୁପି ଗ୍ରେଟ ପାର୍ଟିରେ ତାକୁ ଗୋଟାଏ ପ୍ରସ୍ତାବ ଦେଲେ । କଥଟା ହେଉଛି, ସେ ଯଦି ରାଜି ହୁଅନ୍ତା, ଖଣ୍ଡେ ଟେକ୍‌ସି ଭଡ଼ା କରି ସେମାନେ ଯିବାର ବ୍ୟବସ୍ଥା କରନ୍ତୁ । ସେ ତାଙ୍କୁ ଟିକିଏ ଲଘୁ ଆଘାତ ଦେବାକୁ ଚାହୁଁଥିଲା । ଜଣେ ଆଇ. ଏ ଏସ୍ ଅଫିସରଙ୍କ ଟେକ୍‌ସି ଭଡ଼ା ଏକ ଆବଶ୍ୟକତା ହୋଇ ପାରେ କିନ୍ତୁ ତାପାଇଁ ଅବିମୃଷ୍ୟକାରିତା । କିନ୍ତୁ ସେ କିଛି ନ କହିକି କେବଳ ପ୍ରସ୍ତାବ ଦେଲା ଯେ ସେ ଗୋଟେ ରିକ୍‌ସା ଯୋଗାଡ଼ରେ ଅଛି । ବସ୍ ଷ୍ଟାଣ୍ଡ ପର୍ଯ୍ୟନ୍ତ ତାର ସାଥିହେବାକୁ ତାଙ୍କର କିଛି ଆପତ୍ତି ଅଛିକି ? ଭଦ୍ରଲୋକ ବୋଧହୁଏ ଅବଜ୍ଞାର ଆଖିରେ ଅଳ୍ପ ଚାହିଁଦେଇ ମୁହ ଫେରାଇ ନେଲେ । ତାପରେ ସେ ଯାହାପଡ଼ୁ ପଛକେ ଦେବାକୁ ନିଷ୍ପତ୍ତି କରି ଖଣ୍ଡେ·ରିକ୍‌ସାବାଲା ସାଙ୍ଗରେ କଥା ଛିଡ଼ାଇଲା ଓ ରିକ୍‌ସା ଉପରକୁ ଉଠିଗଲା । ହଠାତ୍ ରହନ୍ତୁ ବୋଲି ଏକ ଓଜନିଆ ଆଓ୍ୟାଜ୍‌ରେ ସେ ମୁହଁ ଫେରାଇଲା । ଭଦ୍ରବ୍ୟକ୍ତି ତା ଆଡ଼କୁ ଆଗେଇ ଥିଲେ । ରିକ୍‌ସା ପାଖରେ ପହଞ୍ଚି ସେ ଚଢ଼ିବାକୁ ଗୋଡ଼ ଟେକିଲେ ଏବଂ ସେ ଓହ୍ଲାଇପଡ଼ି ତାଙ୍କ ସୁବିଧାରେ ବସିବାକୁ ଅଧିକ ସ୍ଥାନ ଦେଇ ଅଳ୍ପ ଜାଗାରେ ସଙ୍କୋଚର ସହିତ ଗେଞ୍ଜିଗାଞ୍ଜି ହୋଇ ବସିଲା । ରିକ୍‌ସା. ଚାଲିଲା ।

ନିରୁତିଆ ରାସ୍ତା । ନିଃଶବ୍ଦ ରାତି । ନାଚିଲା ଜହ୍ନ । ନୀରବ ସହଯାତ୍ରୀ । ଚୂପ୍‌ଚାପ ବସି ଭଦ୍ରଲୋକ କିଛି ଭୁଲ କରିଛନ୍ତି ବୋଲି ପସ୍ତେଇ ହେଉଛନ୍ତି ବୋଧହୁଏ । ନିଜକୁ ଖୋଲିଖାଲି ସହଯାତ୍ରୀଙ୍କ ସହିତ ମିଶିଯିବାକୁ ମନ ତ.ର

ଉଚ୍ଛନ୍ନ ହୋଇ ଉଠୁଥିଲା । କିନ୍ତୁ ଭଦ୍ରଲୋକ ନିଜର ଗୋଲେଇ ଗାରର ଘେର ଭିତରୁ ଟିକିଏ ବି ଓହରି ଆସିବାକୁ ଇଚ୍ଛା କରୁନଥିଲେ । ସେ ତାଙ୍କୁ ଦୟାକଲା । ନିଜର ଆଭିଜାତ୍ୟର ବଳୟ ଭିତରେ ବିଚରା ନିଜକୁ ଅସହାୟ ଭାବରେ କଇଦୀ କରି ରଖିବାକୁ ଅଭ୍ୟାସ କରି ପକାଇଛନ୍ତି । ପ୍ରାଣର ଝରିପିବା ଝରଣାକୁ ଫ୍ରିଜ୍ ଭିତରେ ଜବରଦସ୍ତ ଭର୍ତ୍ତିକରି ତାକୁ ବରଫର ମୁଣ୍ଡା କରି କରି ହିମାଳୟର ଅହଙ୍କାର ପାଇଁ ନିଜକୁ ନିଜଠୁଁ ଛଡ଼ାଇ ନେଇଛନ୍ତି ।

ରିକ୍ସାବାଲା ବିଡ଼ି ଲଲେଇଲା । ସେ ମଧ୍ୟ ପକେଟରୁ ସିଗାରେଟ୍ ଖଣ୍ଡେ କାଢ଼ି ରିକ୍ସାବାଲାକୁ ଡିଆସିଲି ମାଗିଲା । ତା ଡିଆଁସିଲିର ଶେଷ କାଠିଟି ରିକ୍ସାବାଲା ମାରି ସାରିଥିଲା । ବିନା ଦ୍ୱିରୁକ୍ତିରେ ସେ ରିକ୍ସାବାଲାର ଜଳନ୍ତା ବିଡ଼ି ମାଗିଆଣି ସେଥିରୁ ତା ସିଗାରେଟ ଧରେଇଲା । ପାଖର ସହଯାତ୍ରୀ ଟିକିଏ ହଲିଗଲେ । ଚମକି ପଡ଼ିଲେ ବୋଧହୁଏ । ତା'ପରେ ସେ ରିକ୍ସାବାଲା ସାଙ୍ଗରେ ଦୁଃଖସୁଖ ଆରମ୍ଭ କରିଦେଲା । ତାଘର, ତା ଝୁଅପିଲା, ତା ବାପା ମାଆ, ତା ସାଇଁପଡ଼ିଶା କଥା ପକାଉ ପକାଉ ସେଦିନ ତାର କ'ଣ ତରକାରୀ ହୋଇଥିଲା, ସେ ପର୍ଯ୍ୟନ୍ତ ବି କଥା ଆଗେଇ ଗଲା । ରିକଶାବାଲା ବି ତା ଆନ୍ତରିକତା ଉଷୁମ ପାଇ ତାର ସ୍ତ୍ରୀର ପ୍ରସଙ୍ଗକୁ ଆପେ ଆପେ ଗପସପ ଭିତରକୁ ଝିଙ୍କି ଆଣିଥିଲା । ତା ସ୍ତ୍ରୀର ରୂପ, ତା' ହସ' ତା ମୁହଁ, ତା ଭଲପାଇବା, ତାର ସେବା, ତା ଦରଦ, ତା ତ୍ୟାଗ, ତା ତରକାରୀରନ୍ଧା, ତା ଶୋଇ ପାରିବା ଉପରେ ତା କଥାର କବିତା ସେ ବଡ଼ ଟାଣି ଟାଣି ଗାଇ ଗାଇ ଯାଉଥିଲା । ଭଦ୍ରଲୋକ ଘୃଣାରେ ମୁହ୍ୟମାନ ହେଉଥିଲେ କି ତାଙ୍କ ବନ୍ଦ କବାଟର ଫାଙ୍କରୁ ସ୍ୱଚ୍ଛନ୍ଦ ଜୀବନର ବାସ୍ନା ଶୁଙ୍ଘୁଥିଲେ, ସେକଥା ସେ ଜାଣନ୍ତି । ସେ ତାଙ୍କର ଉପସ୍ଥିତିକୁ ଇଚ୍ଛାକରି ଭୁଲି ଯାଇଥିଲା ।

ସେ ଦୁହେଁ ବସଷ୍ଟାଣ୍ଡରେ ଓହ୍ଲାଇଲେ । ସେ ବସ୍ ଉପରକୁ ଉଠିଲା । ଭଦ୍ରବ୍ୟକ୍ତି ବି ବସ୍ ଭିତରେ ପଶିଲେ । ସେ ଅନନ୍ୟୋପାୟ ବୋଲି ମନେ ହେଉଥିଲେ । ବସ୍ ଛୁଟିଲା ବେଳକୁ ଦୌଡ଼ି ଦୌଡ଼ି ଜଣେ ଲୋକ ତରବରରେ ଚଢ଼ି ଆସିଲା । ମଳି କଟମଟ ଗାମୁଛା ଖଣ୍ଡେ ପିନ୍ଧିଛି ।

ତା ଉପରେ ମଇଳା ଛଟା କାଦୁଅ ଛିଟିକାର ଦାଗ । ଗୋଟିଏ ବଡ଼ ପୁରୁଣା ପରିବାରଖା ବେତା ହାତରେ ଧରିଛି । ଭଦ୍ରଲୋକଙ୍କ ପାଖରେ ଥିବା ଫାଙ୍କା ଜାଗାରେ ସେ ଚଳନ୍ତା ବସ୍‌ରେ ନିଜକୁ ସମାଳି ସମାଳି ବସି-ପଡ଼ିଲା । ତାପରେ ଭଦ୍ରଲୋକଙ୍କୁ ଦେଖି ହାତଯୋଡ଼ି ଜୁହାର ହୋଇ ଆହ୍ଲାଦରେ କହିଲା—

"ବାବୁ ଆପଣ ଟାଉନ୍‌କୁ ଆଇଥେଲେ କି ? ମୁଁ ତ ନିତି ପରିବା ଘିନି ଏଠିକି ଆସେ । ଆଜି ବେପାର ସାରି ଏଇ ଗାଡ଼ିରେ ଘରକୁ ଫେରି ଯାଏ ।"

ସେ ଭଦ୍ରଲୋକ ବସିଥିବା ସିଧା ଆରପାଖ ସିଟ୍‌ରେ ବସିଥିଲା । ଯଦିଓ ଗାଡ଼ି ଚଢ଼ିଲାବେଳେ ଭଦ୍ରଲୋକଙ୍କ ପାଖରେ ଜାଗାଥିଲା, ସେ ଇଚ୍ଛାକରି ବସିନଥିଲା । ସେ ଦେଖିଲା ଭଦ୍ରଲୋକଙ୍କ କପାଳ ଝାଳରେ ଜକେଇ ଉଠୁଛି । ଏ ପରିବାବାଲାଟା ବୋଧହୁଏ ତାଙ୍କ ଗାଁ ଲୋକ । ସେ ସର୍ବସାଧାରଣ ବସ୍‌ରେ ପୁଣି ଯାଚ୍ଛାତା ଲୋକଙ୍କ ସାଙ୍ଗରେ ବସି ଯାଉଛନ୍ତି, ଏକଥା ତାଙ୍କ ଗାଁର ପରିବାବାଲା ଦେଖିଦେଲା !

ଘଟଣାକୁ ଗୋଟିଏ ଝୁଙ୍କରେ କହିସାରି ଦେବସ୍ନାନ ମୋତେ ଟିକିଏ ଅପେକ୍ଷାକରି କହିଥିଲା--ବୁଝିଲୁ ସାହିତ୍ୟିକ ଫୁଲ୍,କୋମଳ ମସ୍ତିଷ୍କର ପରି ନିଃସଙ୍ଗତା ବ୍ୟାଧି କେଉଁଠି କେବେ ଓହ୍ଲେଇ ପଡ଼ି ମାଡ଼ି ମାଡ଼ି ଯାଏନି । ଟସର ପୋକପରି ନିଃସଙ୍ଗତାର ଖୋଷା ତିଆରି କରି ତା ଭିତରେ ପଶିବାକୁ ପଡ଼େ ।



# ସବୁ ଅବ୍ୟକ୍ତ

ସହରର ଝାମ୍ପୁରା ବରଗଛ ମୂଳକୁ ସଞ୍ଜ ଓହ୍ଲାଇବା ଆଗରୁ ସେମାନେ ସବୁଦିନେ ଫେରିଆସନ୍ତି । ଜାଗାଟା ସହର ଭିତରୁଁ ଅନେକ ଦୂରଛଡ଼ିଆ । ପେଟକୁ ଯାଇତାଇ ମୁଠାଏ ଯୋଗାଇବା ପାଇଁ ଦିନଯାକ ଦେହମନକୁ ଖଟେଇ ଖଟେଇ ସେମାନେ ଠିକଏ ଗୋଡ଼ହାତ ସଳଖିବାକୁ ସେଠିକି ଯେ ପଳାଇ ଆସନ୍ତି, ତା ନୁହେଁ । ସେମାନଙ୍କୁ ସେଠିକି ଅଲ୍‌ବତ୍ ଆସିବାକୁ ପଡ଼ିବ । ସେଠିକି ନ ଆସିଲେ କେବଳ ପେଟର ଗ୍ରେଟ ସମ୍ଭାଳିବାକୁ ପଡ଼ିବନି, ପିଠି ଉପରେ ଗୋଇଠା, ବିଧାକୁ ବି ବରଦାସ୍ତ କରିବାକୁ ପଡ଼ିବ । ଦାଦାମାଲିକଙ୍କ କଡ଼ା କଡ଼ା ହୁକୁମ । ସେମାନେ ସେଠିକି ମୁହଁ ସଞ୍ଜ ଆଗରୁ ନିଶ୍ଚୟ ଆସିବେ ଏବଂ ଦାଦା ସାହେବ ଆସିଲା-ଯାଏଁ ସେମାନେ ସେଠି ଅଟକି ରହିବେ । ଦାଦା ଆସିବେ ଏବଂ ସେ ତାଙ୍କର ମାମୁଲି ଆଦାୟ କରିବେ । ରୋଜଗାରର ଅଳ୍ପ ବହୁତ ଉପରେ ଅନେକ ଜେରା ଚାଲିବ । ଅର୍ଜନରୁ କିଛି ଏପାଖ ସେପାଖ କରିବାମାନେ ସହରରୁ ମାଡ଼ଖାଇ ସହରରୁ ତଡ଼ା ଖାଇବା । ଦାଦାଙ୍କ ଚରମାନଙ୍କ ନଜର ସବୁବେଳେ ସେମାନଙ୍କ ଉପରେ ଥାଏ । ତାପରେ ସେମାନେ ଅଭିନୟର କିଛି ଖିଲାପ କରିଥିଲେ, ସେଥିପାଇଁ ଖାତିମତ ଖେସରତ ଦେବାକୁ ହୁଏ । ଜୋରିମାନା ଦେଇ ହେଉ, ମାଡ଼ଖାଇ ହେଉ ବା ଉଭୟରେ ହେଉ । ଦାଦାଙ୍କ ଦୂତମାନେ ବେଳେବେଳେ ବଡ଼ ବଡ଼ ଶିକାରଙ୍କୁ ନାଳକାଠି ତାଙ୍କ ଆଡ଼କୁ ହୁରୁଡ଼ାଇବାକୁ ବ୍ୟବସ୍ଥା କରନ୍ତି । ବେଶିକରି ସହରକୁ ସଉକକରି ଆସିବାର ବିଦେଶୀ ସଉଦାଗରମାନଙ୍କ ଉପରେ ସେମାନେ ନଜର ପକାନ୍ତି । ରାସ୍ତା ମଝିରେ ଟ୍ରକ୍, ଗାଡ଼ି ରଖାଇ କିମ୍ବା ଅଯଥା ଗଣ୍ଡଗୋଳ ଓ ଲୋକ ଭିଡ଼ ଭିଡ଼ାଇ ଶିକାରମାନଙ୍କୁ ସେମାନଙ୍କ ଅଜଣାରେ ଅନ୍ୟବାଟ ଦେଇ ଯିବାକୁ ବାଧ କରନ୍ତି, ଯେଉଁ ବାଟରେ ତାଙ୍କର ଅନୁଗତମାନେ ବନସିଖଡ଼ା ଧରି ଠିଆ ହୋଇଥାନ୍ତି । ସଞ୍ଜପହର ପରେ ଦାଦା ବାହାଦୁର ବରଗଛ ମୂଳେ ବିଜେହୋଇ ପାଉଣା ହାସଲ କରନ୍ତି ଓ ପରଦିନ କିଏ କେଉଁ ଇଲାକାକୁ ଯିବ, ତାର ଠିକଣା କରି ବାହୁଡ଼ିଯାନ୍ତି । କୋକିଳ ଛଡ଼ା ଅନ୍ୟ

ପେଷାଦାର ଭିକାରୁଣୀମାନେ ନିଜକୁ ଉଚ୍ଛ୍ୱାସକର ନିଃଶ୍ୱାସ ମାରନ୍ତି, ଯାହାହେଉ, ଗୋଟିଏ ଦିନ ପାର ହୋଇଗଲା !

କୋକିଳ ବରଗଛ ମୂଳକୁ ଫେରୁଥିଲା । ବହୁତ ପଛରୁ ଆରମ୍ଭ କରି ତା ଜୀବନର ହିସାବ ଖାତାକୁ ଫର୍ଦ୍ଦ କରି ଓଲଟାଇ ଗୁଳଥିଲା । ଏଣିକି ସେ ଦିନକୁ ଦିନ ବିଶେଷ ନାଗୁର ହୋଇ ଉଠୁଥିଲା । ପେଟକୁ ଯେତେ ବହଲେଇଲେବି, ସେ ତାର ବୋଲ ମାନୁନି । ବୟସର ବସ୍ତାକୁ ଖସେଇ ପକାଇବାକୁ ବ୍ୟସ୍ତ ହେଲେ ବି ସେ ବେଶି ବେଶି ମାଡ଼ି ବସୁଛି । ଏତେ ଶୋକ, ଏତେ ଅବହେଳା ଏତେ ମନକଷ୍ଟ, ତା ବୟସର ପାଖୁଡ଼ା ଦିହରୁ ଟିକିଏ ବି ରଙ୍ଗ ଉଡ଼େଇ ଦେଉନି କି ଟିକିଏ ବି ମହକ ଛଡ଼ାଇ ନେଉନି । ପେଟର ଜୁଲୁମ ବୟସର ବାସନାକୁ କଣ ଫାଙ୍କିଦେଇ ହୁଏ ?

ଏହି ଫଗୁଣକୁ ତାର କୋଡ଼ିଏ ଯାଇ ଏକୋଇଶ ପଶିବ । ଘଗି ଘଗି ତା ଗୁଣ୍ଡ ଭିତରଟା ଶୁଖି ଶୁଖି ଯେତକ ସରୁ ହୋଇଯାଇଛି, ତାର ଗୁଣ୍ଡ ଉପରଟା ସେତକ ଫୁଲି ଫୁଲି ଓଜନିଆ ହୋଇପଡ଼ୁଛି । ଏତେ ଶନ୍ତାରେ ବି ରୂପଟା ଲୁଣିଖିଆ ହାଣ୍ଡି ଭଳି କାହିଁ ମିଳେଇ ଯାଉନି ତ ? ତା ଆଖିର କଡ଼ା କଡ଼ା ଖାରୁଆ ଲୁହ ତା ଚିକ୍କଣ ଗାଲର ପାଳସକୁ ଖାଇ ଖାଇ ଯାଉଥିଲେ, ସେ ବଞ୍ଚିଯାନ୍ତା । ନା, ଏ ବୟସ ଏତେ ଶୀଘ୍ର ଓ୍ୟାପସ ଯିବନି ।

ସେ କାଳେ ମାଆ ପେଟରୁ ଯେତେବେଳେ ଭୂଇଁରେ ପଡ଼ିଲା, ସେତେବେଳେ ତାଙ୍କ ବାଡ଼ ଦୁଆର ଆମ୍ବଡ଼ାଳ ସନ୍ଧିରେ ଲୁଚି ଲୁଚି କୋଇଲିଟିଏ ଡାକ ପକାଉଥିଲା । କୋଇଲି ଡାକଗୁଣି ସେ ଆସିଛିବୋଲି, ତା ଜେଜେମାଆ ଶରଧାରେ ତା ନାଁ ଦେଇଥିଲେ କୋକିଳ । ଜେଜେମାଆ ତାକୁ କାଳେ ସମସ୍ତଙ୍କୁ ଦେଖେଇ କହୁଥିଲେ — ଦେଖିବ ରୁହ, ତା କୋକିଳର କଣ୍ଠ କୋଇଲିଠୁଁ ଆହୁରି ମିଠା ହେବ । ଦେଖୁନ, ଦିହରୁ କେମିତି ଆମ୍ବ ବଉଳର ରଙ୍ଗ ବୋହି ପଡ଼ୁଛି ।

ସେ ବର୍ଷକର ହେଲା, ଦୁଇ ବର୍ଷର, ତାକୁ ତିନିବର୍ଷ ପୂରିଲା । ତା ପାଟି ଫିଟିଲାନି । ଘରସାରା ସମସ୍ତଙ୍କ ମୁହଁ ଖଟା ହୋଇଗଲା ।

ଫଗୁ ସାମଲର ଝିଅଟା ଜାର୍ଜୀହେଇ ଜନ୍ମିଛି ବୋଲି, ସମସ୍ତେ ଚିଟିକାରି ମାରିଲେ । ସେ ପିଲାଦିନେ କିଛି ସିନା ବୁଝି ପାରୁନଥିଲା ତାର ବି ଜାଣିବାର ବୟସ ଆସିଲା । ଫଗୁଣ ଆସିଲେ ଆମ୍ବତୋଟାରେ ଘୂରି ଘୂରି କୋଇଲିକୁ ଖେଚଡ଼ି ହେଇ ହେଇ କୁହୁ କୁହୁ କରିବାକୁ କେତେନା କେତେ ଓଠକୁ ଚକଉପର କରେ । ନା, କୋଇଲିଟା ଉପରେ ତାର ଘୋର ରାଗ ହୁଏ । ସେ ଜନ୍ମ ହେବାବେଳେ ଏଇ କୋଇଲିଟା ହିଂସାରେ ତା କଣ୍ଠକୁ ଛଡ଼ାଇ ନେଇଛି । ହିଂସୃରିଟା ଢେଲା ଗୋଟାଇ ସେ କୋଇଲିକୁ ଅନସାକରି ଆମ୍ବଗଛକୁ ଫିଙ୍ଗେ । କୋଇଲିଟା ଉଡ଼େ ଚାଲିଏ । ତା'ପଛରେ ଗୋଡ଼େଇ ଗୋଡ଼ାଇ ଥକ୍କାହେଇ ବସିପଡ଼ି ନିଜ ତଣ୍ଡିକୁ ପଥରରେ ଛେଚି ଛେଚି ଦିଏ । ହିଁ ଏ ନିଆଁ ଲଗା ବେକକୁ ମୋଡ଼ିମାଡ଼ି ଛିଣ୍ଡାଇ ପକାଇବ ।

କୋଦଳ ସହରର ମୁଣ୍ଡ ବରଗଛ ଆଡ଼କୁ ଗୋଡ଼ ଉଠାଉଥିଲା । ଅଶ୍ୱତର ଖୁଆଟା ତ'ଭିତରଟାକୁ ମନ୍ଥି ମକଚି ହଲଚଲ କରି କରି ଚହଲାଇ ଦେଉଥିଲା । ଆଉ ତା ଫେଣର ଛିଟିକାରେ ଆଖି ତାର ପୋଡି ପୋଡି ହେଇ ପଡ଼ୁଥିଲା । ଛୁଆଦିନେ ଗାଁର ଛୁଆଙ୍କ ସାଙ୍ଗରେ ମିଶିକି ବି ମିଶି ପାରୁନଥିଲା । ସେ ଠିକ୍ ବୁଝି ପାରୁଥିଲା କେହି ତାକୁ ଭଲ ପାଉ ନଥିଲେ । ଦୟା କରୁଥିଲେ କିମ୍ବା ଘୃଣା କରୁଥିଲେ । ବୟସ ତାର ଦେହ ମନ ଉପରେ ରଙ୍ଗର ଗାର କାଟି କାଟି ଯାଉଥିଲା । ମନ ଉପରେ ଆପେ ଆପେ ସ୍ୱପ୍ନ ତାର ଓହ୍ଲେଇ ପଡ଼ୁଥିଲା । ଫୁରସତ କାଢ଼ି ସ୍ୱପ୍ନର ନକ୍ସା ଆଙ୍କି ଆଙ୍କି ସେ ବରଂ ଆରାମ ପାଉଥିଲା । ଦୁନିଆର ବାସ୍ତବ ଜୀବନ ତା ପାଇଁ ମନା କରାଯାଇଛି ବୋଲି ସେ ବେଶ୍ ବୁଝି ପାରୁଥିଲା ।

ବୋଉ ତା ଉପରେ ସବୁବେଳେ ଖିଟ ଖିଟ ହେଉଥିଲା । ସେ ଯେମିତି ତା ମୁଣ୍ଡଉପରେ ଗୋଟେ ଶକ୍ତ ବୋଝ ହେଇ ମାଡ଼ି ବସିଛି । ତା ଅଣ୍ଟା-ତଳକୁ ଓହଳି ପଡ଼ିଥିବା ତା ଲମ୍ବା ଲମ୍ବା ବହଳିଆ ବାଳକୁ କୁଣ୍ଡାଉ କୁଣ୍ଡାଉ ବେଳେ ବେଳେ ତା ବୋଉ ସକେଇ ଉଠୁଥିଲା । ତା ଓଠକୁ ଚେଙ୍କିଧରି ସେ ଛୁଆଙ୍କ ପରି କାନ୍ଦି ପକାଉଥିଲା । ଏଡ଼େ ସୁନ୍ଦର ଝିଅର ଜୀବନଟା ବିକଳା ହେଇଗଲା । ଜାର୍ଜୀଟାକୁ କିଏ କଣ ସତେ ବାହାହେବ ? କେତେବେଳେ କେମିତି ତା ଦେହପା ଖରାପ ହେଲେ ବୋଉ କେମିତି ଖାପଛଡ଼ା ହେଇ

ରହୁଥିଲେ । ସେ ତା ବୋଉର ଢ଼ଙ୍ଗ ଢ଼ାଙ୍ଗରୁ ବୁଝୁଥିଲା, ତା ବୋଉ ଯେମିତି ଇଚ୍ଛା କରୁଥିଲା ସେ ମରିଗଲେ, ସମସ୍ତେ ରକ୍ଷା ପାଇଯାନ୍ତେ । ତା ଜୀବନରେ ସେ ଜଣିଏ ଲୋକକୁ ଜାଣେ ଯିଏ ତା ଜୀବନକୁ ଜୀବନ ଭଲ ଦେଖୁଥିଲେ ଆଉ ଜୀଇଥିବା ଯାଏଁ ତାକୁ ଭଲ ପାଉଥିଲେ । ସେ ହେଉଛନ୍ତି ତା ବାପା । ନଗୁଡିଆ ଖବର ଝାଂଜ ଖାଇ ଖାଇ ତା ଗ୍ଲେଟିଆ ଜୀବନଟା ଉହଳ ବିକଳ ହେଉଥିଲା । ବାପା ଯେତେବେଳେ କାମଦାମ ସାରି ଘରେ ପହଞ୍ଚୁଥିଲେ, ତାଙ୍କର ଗୁଇରେ ସେ ଟିକିଏ ଆଶକତ ମେଣ୍ଟାଉଥିଲା । ତା ଗୁଇର ଗଛ ଉପୁଡ଼ି ପଡ଼ିଲା । ଅଧାବୟସରେ ବାପା ଚାଲିଗଲେ । ସାଇବାଲାଙ୍କ ଆଗରେ ମୁରବୀ ପଣିଆକୁ ବଜାଇ ରଖି ତା ବୋଉ ତାକୁ ବାହାଦେଲା । ତା ବୋଉର ମାଆମନ ଅଝଟିଆ ପିଲା ପରି କାନ୍ଦି କାନ୍ଦି ଅନେକ ଦିନ ଆଗରୁ ଶୋଇ-ପଡ଼ିଥିଲା । ତା ସ୍ୱପ୍ନର ପାଖୁଡ଼ାକୁ ଛିଣ୍ଡେଇ ମିଞ୍ଜେଇ ତାକୁ ଯେଉଁଠି ନେଇ ହାବୁଡ଼ାଇ ଦିଆଗଲା ସେଠି ତା ସ୍ୱାମୀଙ୍କର ସେ ଥିଲା ତୃତୀୟ ପକ୍ଷ । ପ୍ରଥମ ପକ୍ଷ ପୁଅର ବାହାଘର ସରି ଯାଇଥିଲା । ସେ ବି ଛୁଆପିଲାର ବାପହେଇ ସାରିଥିଲା । ବାପା ତ ଯାଇଥିଲେ, ବୋଉ ତା ମୁଣ୍ଡରୁ ବୋଝ ଓହ୍ଲେଇ ଦେଇ ଆଖି ବୁଜିଲା । ତା ବୋଉ ନିଶ୍ଚୟ ଜାଣିଥିଲା ଯେ ତା ଝିଅର ପଦାର୍ଥଟିକୁ ସେ ନର୍ଦ୍ଦମାରେ ଫିଙ୍ଗି ଦେଇଛି । ବୋଧହୁଏ ନର୍ଦ୍ଦମାର ପୋକମାନେ ତାକୁ କେମିତି ଝୁଣିଝୁଣି ଖାଇବେ, ସେ କାହାଣୀ ଶୁଣିବାକୁ ତା ବୋଉର ଧୈର୍ଯ୍ୟ ନଥିଲା । ପ୍ରଥମ ଚଣ୍ଟିଆ ଖାଇ ତା ଜୀବନଟା ଚୂନା ଚୂନା ହୋଇ ପଡ଼ିଥିଲା । ଯୌବନର ସେ ପାରିର ବହୁ ଦୂରରେ ପୂରାପୂରି ଥକି ପଡ଼ିଥିବା ଗେରସ୍ତର ତୃତୀୟ ପକ୍ଷ କରି ତାକୁ ଠିଆ ହୋଇଥିଲା । ଶେଷ ଧକ୍କାଟା ଖାଇଲା । ହାକୁ ହାତରୁ କାଚ ଓହ୍ଲେଇବାକୁ ପଡ଼ିଲା ।

ତାପରେ, ତାପରେ ତା ଉପରେ ଅପବାଦ ଲଦି ଦିଆଗଲା ଯେ ସେ ବାହାଘର ଆଗରୁ ବାପକୁ ଖାଇଲା ଆଉ ବାହାଘର ପରେ ପରେ ତାର ବୋଉ ଓ ତା ଗେରସ୍ତକୁ ପାଟିରେ ପକାଇଲା । ଗେରସ୍ତ ଚାଲିଯିବା ପରେ ସାବତ ପୁଅ ଘରେ ସେ ମାଆ ହେବାକୁ ତାର ଫାବୁ ନଥିଲା ବୋଲି ସେ ବୁଝୁଥିଲା । କିନ୍ତୁ ତଥାପି ସେଠି ଚାକରିଆଣୀ ହୋଇ ସେ ନିଜକୁ ସମ୍ଭାଳି ନେବାକୁ ଠିକ୍ ମନେ କରିଥିଲା । ଦେହ ଶିକାରୀଙ୍କ କବଳରୁ ନିଜର ବୟସୀ

ଦେହକୁ ବଞ୍ଚେଇବା ଲଗି ସେ ସାବତ ପୁଅ ପାଖରେ ମାଟି କାମୁଡ଼ି ପଡ଼ି ରହିଲା ।

ପୁଅର ପରିବାର ବଢ଼ିଲା । ବୋହୂର ସଉକ ବଢ଼ିଲା । ପୁଅର ବୋତଲ ବଢ଼ିଲା । ବୋହୂର ହୁକୁମ ବଢ଼ିଲା । ସବୁ ବଢ଼ିଲା ଭିତରେ ସେ ନିଜେ ଛୁଡ଼ି ଛୁଡ଼ି ଯାଉଥିଲା । ପୂର୍ବପୁରୁ ଛୁଡ଼ିକି ସେ ସେଦିନ ମାଟିରେ ଲୁଟିକି ପଡ଼ିଲା, ଯେଉଁଦିନ ରାତି ଅଧରେ ମଦୋନ୍ମତ୍ତ ପୁଅ ତା ଘରେ ଅଚିହ୍ନା ପଶି ତା ଖୋସଣି ଫିଟାଇବାକୁ ଜବରଦସ୍ତି ଆରମ୍ଭ କଲା । ସେହିଦିନ ସେହି ରାତିରେ ସେ ଘରଛାଡ଼ି ଦେବାକୁ ବାଧ୍ୟ ହେଲା । ସେହି ଦିନଠୁଁ ସେ ପଦାରେ ପଦାରେ ପେଟପାଇଁ ଯୁଦ୍ଧ କରି ଏ ସହରରୁ ସେ ସହରକୁ ଯୁଦ୍ଧ-ଖଣ୍ଡିଆ ପଦାତିକଭଳି ଘୁସୁରି ଘୁସୁରି ଘୂରି ବୁଲୁଛି ।

ସେଦିନ ସିଧା ସିଧା ସେ ନଈଗଣ୍ଡ ପାଖକୁ ଦୌଡ଼ି ଦୌଡ଼ି ପଳାଇ ଯାଇଥିଲା । ନିଜକୁ ଶେଷ କରି ବରଂ ଷାନ୍ତିପାଇବାକୁ ସେ ପସନ୍ଦକରି ନେଇଥିଲା । ନଈ କୂଳରେ ସେ ନିଜର ମାୟାକୁ ମୂରୁଛି ପାରିଲାନି । ନିଜର ଜୀବନ ଉପରେ ତାର ଅନ୍ତରକ୍ତ ଅରୁଚି ଆସି ଯାଇଥିଲା ସତ, କିନ୍ତୁ ନିଜର ସୁନ୍ଦର ଦେହ ଉପରେ ଛୁଆ ଦିନରୁ ବଡ଼ ମାୟା ଲଗିଯାଇଥିଲା । ମୁହଁ ନ ଫିଟିଲେ ବି ତା'ଦେହକୁ ଦେଖି ନିଶ୍ଚୟ କେହି ଆଦରକରି ତାକୁ ଘରକୁ ନେଇଯିବବୋଲି, ତା ଉପରେ ତା ଭରସା ଥିଲା । ତା ଦେହର ଚମକ ଦେଖି ଯେଉଁ ମାଳୀ ଆସି ତାକୁ ନେଇଗଲା, ସେ ଖାଲି ତାକୁ ଦେଖିବା ଲାଗି ନେଇଥିଲା । ଶୁଙ୍ଘିବାକୁ ତା ନାକରେ ତାକତ ନଥିଲା । ନିଜକୁ କେବଳ ଦେଖାଇ ସେ ବଞ୍ଚିବାକୁ ପ୍ରସ୍ତୁତ ବି ହେଇଥିଲା । ମାଳୀ ବି ରହିଲା ନାହିଁ ।

ନଈ କୂଳରେ ତା ମୁଣ୍ଡ ଘୂରେଇଗଲା । ନଈ ଉପରେ ହାମୁଡ଼େଇ ପଡ଼ିଥିବା କଳା କଳା ରାତିଟା ତାକୁ ଦାନ୍ତ ନିକିଟି ଖଟେଇ ହେଲା । ତା ଦେହରେ ଗମ୍ ଗମ୍ ଝାଳ ଜକେଇଲା । ସେ ପଛକୁ ଦୌଡ଼ି ଦୌଡ଼ି ପଳାଇଗଲା । ସେଇଦିନଠୁଁ ସେ ପଡ଼ି ଉଠି ଲହୂଲୁହାଣହେଇ ବୁଲୁଛି ।

କୋକିଲ ବରଗଛ ମୂଳକୁ ଯାଉଥିଲା । ଦିହଯାକ ବିଛେଇହୋଇ ପଡ଼ିଥିବା ଅଖାତର ଧାଆ ଉପରୁ ପତଳା ବକଳାକୁ ସେ କୁଣ୍ଡେଇ ପକାଇଛି । ଆସୁ ଆସୁ ଅନେକ କଥା ଭାବିଗଲା । ସେ ନିଜକୁ ଅଖାତ ଭିତରୁ ଛଡ଼ାଇ ଆଣିଲା । ଘୃଣା କରୁଥିବା ନିଜର ଜୀବନ ସହିତ ସେ ସାଲିସ୍ କରିନେବାକୁ ଅଭ୍ୟାସ କରୁଛି । ଏଇ ତା ସାଙ୍ଗରେ କାମିନୀ ଆଣ୍ଟି । କାମିନୀ ଆଣ୍ଟିର ଅଣ୍ଟା ନଇଁ ଗଲାଣି । ତେବେ ବି ସେ ଅଣ୍ଟା ଭିଡ଼ୁଛି । ଦାଦା ମାଲିକଙ୍କ ବରାତ ମୁତାବକ ସେ କାମ କରି ଚାଲିଛି । ନିଜର ସ୍ୱାମୀ ମେଡ଼ିକାଲ୍‌ରେ ପଡ଼ିଛି, ବଞ୍ଚିବାର ଆଶା ନାହିଁ । ଡାକ୍ତର ଇଞ୍ଜେକ୍‌ସନ ପାଇଁ ପଇସା ମାଗୁଛି, ନିଜର ପିଲାପାଣ୍ଡି କିଛିନାହିଁ, ଇତ୍ୟାଦି ଇତ୍ୟାଦି ଶିଖିବାର ଧାଡ଼ିଗୁଡ଼ାକ କହି ସାରିଲାପରେ ଲୁହ ସିଙ୍ଘାଣି ପୋଛିବା କାମ ବି ଠିକ୍ ଠିକ୍ ଦିନାକେତେ କଲା । ଆସ୍ତେ ଆସ୍ତେ ବଜାର ମାନ୍ଦା ଧଇଲା । ଜାଗା ଜାଗା ବଦଳାଇ । ପାଇଁ ଦାଦାବାହାଦୂରଙ୍କଠୁଁ ହୁକୁମ ଆସିଲା । ବର୍ତ୍ତମାନ ତାକୁ ପେନସନ୍ ଦିଆଇଛି ବୋଲି ବଡ଼ ବଡ଼ ବାବୁ ଭାୟାଙ୍କ ମଠର ଅଟକଲ ଜାଗାମାନଙ୍କରେ ଚିକିତ୍ସା ପାଇଁ ଭିକ୍ଷା କରୁଛି । ମଠର ଅଟକିବା ବ୍ୟବସ୍ଥା ଦାଦାଙ୍କ ଚେଲାଏ କରନ୍ତି ।

ଆଉ କଇଁ ଅପା ? ତା ବେଉସାରେ, ଭଲ ପଇସା ଆସୁଛି, ଦାଦାଙ୍କ ଅଫିସ ଛୁଆ ଯୋଗାଇ ଦେଉଛି । ଅଫିମ ଖର୍ଚ୍ଚ ବି ଦେଉଛି । ଛୁଆକୁ ଅଫିମ ଖୋଇ କାନ୍ଧରେ ପକାଇ ସକାଳୁ ବାହାରିଯାଉଛି । ଗେରସ୍ତ ନାହିଁ, ଘରଦ୍ୱାର ନାହିଁ, ଛେଉଣ୍ଡ ଛୁଆ ଖଣ୍ଡିକ ଲାଗି ଜୀବନ ଧରିଛି, ଛୁଆଟାର କଣ ହେଉଛି ଯେ ଦିନ ହେଲା ଆଖି ଖୋଲୁନାହିଁ, ଇତ୍ୟାଦି ଇତ୍ୟାଦି ଡାଇଲଗ୍‌କୁ ଭଲକରି କହିପାରୁଛି । କହୁଁ କହୁଁ ବେଶ୍ ବି କାନ୍ଦି ପାରୁଛି । ଦାଦା ମାଲିକ ଏଇମିତି କଥାକୁ ସବୁ ଡାଇଲଗ୍ ବୋଲି କହନ୍ତି । ଦାଦା ସମସ୍ତଙ୍କୁ ଡାଇଲଗ୍ ଶିଖାନ୍ତି । ତାପରେ କଇଁ ଅପା ଛୁଆକୁ ସଞ୍ଜ-ବେଳେ ଫେରାଇ ଦେଇ ଦାଦା ସାହେବଙ୍କଠୁଁ ମଜୁରି ନେଉଛି । ବେଉସା କରି ସେ ତ ଆନନ୍ଦ ପାଉଛି ।

ତା ଧନ୍ଦା ? ଦାଦା ଯେଉଁଦିନ ଯେଉଁଠି ବ୍ୟବସାୟ କରିବାକୁ କହିବେ ସେଠି ସେ ବସିବ । ଗୁଣ୍ଡିକୁ ପ୍ରାୟ ଖୋଲିକରି, ଆଉ ଗୁଣ୍ଡି ତା

ଅଜଣାରେ ଖୋଲିଯାଇଛି ବୋଲି ଅଭିନୟକରି ବସିବାକୁ ପଡ଼ିବ । ଖଣ୍ଡେ ଛିଡ଼ା ଶାଢ଼ୀ ବଗ୍ରିଇ ଛକଜାଗା ମାନଙ୍କରେ ଗୋଡ଼ମୁଦି, କାନ ଫାଶିଆ, ଦାନ୍ତଖଣ୍ଟା, ଗୋଇକଡ଼ା, କେଲେଣ୍ଡର ବେପାର କରିବାର ଅଭିନୟ କରିବ । କଥାତ ନାହିଁ, ଆଖିର ଠାରରେ ଗ୍ରାହକଙ୍କ ସାଙ୍ଗରେ ମୂଲଚାଲ କରିବ ।

ତାପରେ ସଂଧ୍ୟାପରେ ତାକୁ ପହଞ୍ଚିବାକୁ ପଡ଼ୁଛି । ଦାଦାଙ୍କ ଗୁରୁଙ୍କ ସାଇକେଲ ପଛରେ ବସି ହେଉ ବା ଚାଲିଚାଲି ହେଉ, ତାକୁ ଯିବାକୁ ପଡ଼ୁଛି । ଯାତନାରେ ଆତ୍ମା କାନ୍ଦୁଛି । ତା ଦେହ କାନ୍ଦୁଛି । ନିଜକୁ କେବଳ କହିବାଛଡ଼ା କାହାକୁ କହିବାକୁ ଶକ୍ତି ନାହିଁ ।

କେଡ଼େ ନାଗୁର ସେ । ନିଜକୁ ବିକଳାବେକଳ ଦ'ପଦ ଦେବାର କଥା କହି ନିଜକୁ ଦେଲେ ଅନ୍ତତଃ ଅଭିନୟରେ ଆନନ୍ଦିତ ଟିକିଏ ମିଳନ୍ତା ! ଦେହକୁ ତ ରକ୍ଷା କରିପାରିବ ନାହିଁ । ଅନ୍ତତଃ ନାଗୁର ଦେହକୁ ଟିକିଏ ଆଶ୍ୱାସନା ଦେବାକୁ ଦ' ଚାରି ପଦ ଅନୁନୟନର କଥା କହି ଗ୍ରାହକକୁ ମନାଇବାକୁ ଚେଷ୍ଟାତ କରନ୍ତା । କଥା କହିବାକୁ ଶକ୍ତି ତାଠୁଁ ସ୍ୱର୍ଗର ଭଗବାନ ଦଳ ଛଡ଼ାଇ ନେଇଛନ୍ତି । ମର୍ତ୍ତ୍ୟର ଦେବତାଦଳ ତା ଦେହର ମାଂସକୁ କାମୁଡ଼ି କାମୁଡ଼ି ଛିଡ଼ାଉଛନ୍ତି । ଦୁଇଟା ଡକାୟତଦଳ ସଲସୁତୁରା ହୋଇ ନିଜ ନିଜ ଇଲାକାରେ ଲୁଟମାର କରୁଛନ୍ତି । ପାଟି ନ ଫିଟୁଥିବା ଗୋଟିଏ ମୂକ ମାଂସଳ ଛେଳିଭଳି ତାକୁ ବଣରେ ବାନ୍ଧିଦିଆଯାଉଛି ଆଉ ଅରଣ୍ୟର ବାଘମାନେ କେବଳ ତା ଉପରକୁ ଝାମ୍ପ ମାରି ତାଙ୍କ ମନଇଚ୍ଛା ମାଂସ ଖାଉଛନ୍ତି ।

ସେଦିନ ସେ ଛକରେ ପସରା ମେଲି ବସିଛି । ଲୋକଟା ଆସିଲା । ତାକୁ ବଲି ବଲି କରି ଚାହିଁଲା । ତା ଗୋଡ଼ରୁ ମୁଣ୍ଡଯାଏଁ ଆଖିଦେଇ ସେ ତାକୁ ଲେହୁବେଇଗଲା । ତା ଦେହର ମାଂସ ତାକୁ ଡାକ ପକେଇଲା । ଏମିତି ତାର ଏକେବେଳ ହୁଏନା । ତା ଦେହ ଭୋକ କରୁଛି ବୋଲି, ତାକୁ ସେଦିନ ପ୍ରଥମ କରି କହିଲା । ସେ ତା ଖୋଲା ରଖିଥିବା ବ୍ଲାଉଜକୁ ସଜାଡ଼ି ନେଲା କାହିଁକି କେଜାଣି ? ସେମିତି ତ କରିବାକୁ ତାକୁ ମନା କରାହେଇଛି ।

ଲୋକଂଟାକୁ ଲୋକଟିଏ ବୋଲି ଭାବିବାକୁ ମନ ତାର ବଳେ ବଳେ ଆଗେଇଗଲା । ହଁ, ଲୋକଟିର ତଣ୍ଟି ଶୁଖି ଯାଉଥାଏ ବୋଧହୁଏ । ବର୍ଷ ବାଇଶ ତେଇଶି ହେବ । ନାକର ନିଶ ଗାଲର ପିଲାଳିଆମିକୁ ଲୁଚେଇ ପାରିଦାହିଁ ଥଙ୍ଗ ଥଙ୍ଗ ହୋଇ ତାଜମହଲର ଛବିଥିବା କେଲେଣ୍ଡରର ଦାମ ପଚାରିଲା । ତାକୁ ଆଗରୁ ତାଲିମ ଦିଆଯାଇଛି ଯେ ପାଞ୍ଚ ପଇସାର ଜିନିଷକୁ ସେ ପାଞ୍ଚଟଙ୍କା କହିବ । ସେ ଠାରରେ ଚଢ଼ା ଦାମଟା ବତାଇ ଦେଲା । ବିଚରା ଲୋକଟା ପକେଟ ଅଣ୍ଡାଳି ଗଣାଗଣି ପରେ ତାକୁ ଆଗପରି ବଲ ବଲକରି କଟୁ ସମସ୍ତ ଗୃହିଁ ପଳାଇଗଲା । ସେ ଗୃହାଣି ଭିତରେ କେମିତି ମିଠା ମିଠା ଦରଦ ଥିଲା ।

ତାପର ଦିନ ଛକ ବଦଳାଇ ସେ ଅନ୍ୟ ଜାଗାରେ ବସିଲା । ମନଟା ତାର କେମିତି ଖୋଳିଲା ଖୋଳିଲା ହେଉଥାଏ । ଗ୍ରାହକ ଆସିଲେ । ସେ ଚଢ଼ାଦାମ ଠାରିଲା । ସେମାନେ ଦାମ ଦେଲେ ଓ ଜିନିଷ ନେଲେ । ହାତରେ ପଇସା ନେଉ ନେଉ ହାତ ଉପର ପାଉଥିବା ଗୃପର ଜବାବ୍ ଦେଇ ଆଖିରେ ନିଜର ଭିତର ଦରଦ ବି ହାଙ୍କି ଦେଇଗଲା ।

ସେ ଆସିଲେ । ହାତରେ ତାର ଥୋଇ ଦେଲେ ତାଜମହଲ କେଲେଣ୍ଡର ଦାମଠାରୁ ଦିଟଙ୍କା ଅଧିକା ପଇସା । ତାଙ୍କ ହାତଟାକୁ ଟାଣି ଆଣି ଗୁଡିରେ ଗୃପି ଧରିବାକୁ ତାର ଇଚ୍ଛା ହେଉଥିଲା । ସେ ତାଙ୍କର ଥର ଥର ହାତଟାକୁ ତା ହାତ ଉପରୁ ଉଠାଇ ନେଇ କେଲେଣ୍ଡର ନେଇ ଗୋଟାଏ ଓଜନିଆ ନିଃଶ୍ୱାସ ପକାଇ ଗୃଲିଗଲେ । ସେ ଗୃହିଁ ରହିଥିଲା । କିନ୍ତୁ ଥରେ ବି ତା ଆଡ଼ିକୁ ସେ ଆଖି ଉଠାଇ ଗୃହିଁ ପାରିଲା ନାହିଁ ।

ସନ୍ଧ୍ୟାପରେ ସେ ଦାଦାଙ୍କ ବେଠିଆମାନଙ୍କୁ ଅପେଇ ବସିଥାଏ । ଏ ଗୋଲାମ ଗୁଡ଼ାକ୍ ତାକୁ ସାଇକେଲରେ ନେଉ ନେଉ ବା ଚଲେଇ ଚଲେଇ ବାଟ ଦେଖାଉଁ ଦେଖାଉଁ ମଝିରେ ଅଟକାଇ ତାକୁ ଯେ ଖୁମ୍ପି ଖଣ୍ଡିଆ ଖାବରା ନ କରନ୍ତି, ଏମିତି ନୁହ । ହଠାତ୍ ସେ ପହଞ୍ଚିଲେ । ତାକୁ ଯିବା ପାଇଁ ଡାକିଲେ । ଦାଦାଙ୍କ ଜରିଆରେ ସେ ଆସିଛନ୍ତି ବୋଲି ବୁଝାଇ ଦେଲେ । ତାପରେ ତାକୁ ସାଇକେଲ ପଛରେ ବସାଇ ସାଇ-କେଲ୍ ଛୁଟାଇଲେ । ଭିତର କଳା କଳା ଅନ୍ଧାର ଭିତରେ ଗଳି ଗଳି

ସାଇକେଲ୍ ତାଙ୍କର ଛୁଟୁଥାଏ । ସାଇକେଲ ଅଟକିଲା । ଆଗରେ ନଗ୍ରଛିଆ ମନ୍ଦିର ଆଗକୁ ଭଙ୍ଗା ଗୃହିଣୀ ଉପରେ ଅଳ୍ପ ଅଳ୍ପ ଜହ୍ନ ପଡ଼ୁଛି । ତାପରେ ସେ କହିଗଲେ, କହି ଚାଲିଲେ । ମିଠା ମିଠା କବିତାର କଥା । ତାପରେ ସେ କିଛି ବୁଝିପାରି ନଥିଲି । କିଛି ଜାଣିପାରି ନ ଥିଲି । କିଛି ଭାବିପାରି ନଥିଲି । ନିଜକୁ ତାଙ୍କ ଭିତରେ ହଜାଇ ଦେଇ ଖୋଜି ବି ନଥିଲି । ରାତି ଶେଷବେଳକୁ ସେ ଆଣି ତାକୁ କଇଁଅପା ପାଖ ତାର ନିଜ ପଲ୍ଲୀ ଭିତରେ ଛାଡ଼ି ଦେଇଗଲେ । ସେତେବେଳେ ସେ ଇଚ୍ଛା କରୁଥିଲି ତାଙ୍କୁ ସେ ଅନେକ କିଛି କହନ୍ତା । ଅନ୍ୟକୁ କିଛି କହିବାକୁ ଏମିତି ଇଚ୍ଛା ତାର କେବେ ହୋଇ ନଥିଲା । ଆଖି ତାର ଓଦା ହୋଇଉଠିଲା । ସେ କିଛି କହି-ପାରିବ ନାହିଁ ।

ତା ପରଦିନ ସନ୍ଧ୍ୟାରେ ସେ କାହାକୁ କେମିତି ଚାହିଁକି ବସିଥିଲା । ଗଲା ରାତିରେ ତା ଦେହ ମୁହଁରେ ଲଭିଲଭ ଆସୁଥିବା ଦାଗକୁ ସେ ଅଣ୍ଡାଳି, ଅଣ୍ଡାଳି ଆଖି ମୁଦି ମୁଦି ହସୁଥିଲା । ସବୁ ଦିନ ସେ ନିଜକୁ ବୋତଲ ବୋଲି ଭାବେ । ତା ଭିତରେ ମଦ ଅଛି । ମଦୋଡି ତା ଭିତରୁ ମଦ ପିଅନ୍ତି । ତାଙ୍କୁ ନିଶା ଧାରେ । ବୋତଲକୁ ତ କେବେ ନିଶା ଲାଗେ ନାହିଁ । ସେ ସେଦିନ ଅନୁଭବ କରୁଥିଲା । ତା ବୋତଲ ଦେହରେ ମଦର ନିଶା ଲହଡ଼ା ଭାଙ୍ଗୁଛି ।

ହଠାତ ପଥରପରି ଗୋଟିଏ ଶକ୍ତ ହାତ ତାକୁ ଟେକିନେଇ ଗୋଟାଏ ଗାଡ଼ି ଭିତରେ କଚାଡ଼ି ଦେଲେ । ସେ ଫିକା ଫିକା ଜହ୍ନ ଆଲୁଅ ଭିତରେ ଗାଡ଼ି ଭିତରୁ ଆଖିକୁ ଚଉଡ଼ାଚଉଡ଼ା କରି ଆଗକୁ ଚାହିଁଲା । ତା ଦାଦାର ପାଇକମାନେ ମଠର ଆଗରେ ଲାଠିଧରି ଠିଆ ହୋଇଛନ୍ତି । ଗାଡ଼ି-ବାଲାର ଲାଠିଆଳମାନେ ତା ଦାଦାର ମର୍ଦ୍ଦ ଯଜମାନଙ୍କୁ ବାଡ଼େଇ ବାଡ଼େଇ ରାସ୍ତାକଡ଼କୁ ଗଡ଼େଇ ଫକେଇଲେ । ସେ ବୁଝିଗଲା ସେ ଆଜ ପବନା ବାଘର ହାବୁଡ଼ରେ ପଡ଼ିଛି । ପବନ ଦାଦା ସହରର ଦାଦ ସର୍ଦ୍ଦାର । ସହର ଉପରେ ତା'ର ପୂରା ରାଜୁତି । ଗୋଟିଏ ଗୋଟିଏ ଇଲାକାରେ ଜଣେ ଜଣେ ଦାଦା ତାକୁ ଗୁରୁ ମାନି ବ୍ୟବସାୟ କରନ୍ତି । ପବନା ବାଘର ପାଖ ଲୋକ କୋକିଳକୁ ଆସି ଅନେକଥର ଫୁସୁଲାଫୁସୁଲି କରନ୍ତି । ସେ ପବନ ଦାଦାର ଖୋଦ ଇଲାକାକୁ ଚାଲୁ । ତାକୁ ଖଟ ଦିଆଯିବ, ମାଠ ଦିଆଯିବ ।

ସେ ପିଲଙ୍କ ଉପରେ ହସିଖେଳି ବ୍ୟବସାୟ କରିବ । ତା ମନ କେବେ କେବେଳେ ଲାଜରେଇ ଯାଉଛି । ଯଦି ବ୍ୟବସାୟ କରିବ, ସେମିତି କାହିଁକି ନ କରିବ ? ନିଜ ଦାଦାଙ୍କ ଶୃଙ୍ଖଳ ଉପରେ ସେ ରାଜି ହେଉନି ।

ତାପରେ ରାକ୍ଷସ ପଲ କୋକିଳକୁ ଅସୁର ଗୁମ୍ଫା ଭିତରକୁ ଟେକି ନେଇଗଲେ । ତା କଅଁଳ ମାଂସକୁ ସେମାନେ ଶୋଷିନେଇ ଯାଉଥିଲେ । ଜଣେ, ଦି'ଜଣ ତିନିଜଣ । କୋକିଳର ନିଃଶ୍ୱାସ ବନ୍ଦ ହୋଇ ଆସୁଥିଲା । ତେବେ ବି ତା ଦେହକୁ ପଞ୍ଝାର ନଖସବୁ ଚିରି ପକାଉଥିଲା ।

ପରଦିନ ସକାଳେ ସେହି ପୁରୁଣା ଗଛ ମୂଳରେ କୋକିଳ ପଡ଼ିରହିଥିଲା । ପାଖରେ ବରଗଛ ଚେର ଉପରେ ଡ଼ିଆଁ ଦେଇ ଶୋଇଥିବା ରୁମ ଉପୁଡ଼ା କୁକୁରଟା ହଠାତ୍ ତା ଉପରକୁ ଡେଇଁ ପଡ଼ିଲା । ତା ମୁହଁ,ଓଠ, ଛାତି ଶୁଙ୍ଘି ଶୁଙ୍ଘି ଖୋଲାପଡ଼ିଥିବା ତା ଜଙ୍ଘର ନରମ ମାଂସକୁ କାମୁଡ଼ି ପକାଇଲା ।



# କିଛିନା

ବଙ୍କ ବିକାଶବାବୁ ଅଜିକୁ ତେତିଶ ବର୍ଷ ହେଲା ଦୁଇଟି ଧ୍ୱନିର ଶିକାର ହୋଇ ଆସିଛନ୍ତି । ପ୍ରଥମଟି ବାହାରୁ 'କିଛି ଭାବିବେ ନାହିଁ' । ଆଉ ଆରଟି ହେଉଛି ଘରୁ 'କିଛିନା' । ବାହାରର ଏହି 'କିଛି ଭାବିବେ ନାହିଁ' ଫାର୍ମାଲିଟି ଉପରେ ସେ ସତରେ କିଛି ଭାବନ୍ତି ନାହିଁ । 'କିଛି ଭାବିବେ ନାହିଁ' ଉପକ୍ରମର ପରେ ପରେ ନିଶ୍ଚୟ ଏକ ବିଷୟବସ୍ତୁର ସ୍ୱରୂପ ଅବଶ୍ୟ ଆସିବ । ବଙ୍କବିକାଶବାବୁ 'କିଛି ଭାବିବେ ନାହିଁ' ଏବଂବିଧ ପ୍ରାରମ୍ଭିକା ଉପରେ କିଛି ନ ଭାବି ତା' ପରବର୍ତ୍ତୀ ନିଶ୍ଚିତ ଆସିବାକୁ ଅପେକ୍ଷା କରନ୍ତି । ଏହି 'କିଛି ଭାବିବେ ନାହିଁ'ର ଆଗମନ ପ୍ରାୟ ଶିକାର କରିସାରି ହିଁ ଆସେ । ପ୍ରଥମ ପ୍ରକାରର,—ଏଇ ଧରନ୍ତୁ, ଥରେ ତାଙ୍କ ପଡ଼ୋଶୀ ଘରୁ ଜଣେ ଆସି ରାତିରେ ଅବେଳରେ ତାଙ୍କୁ ଉଠାଇଲା । ସେ ବି ଉଠିଲେ । ତା'ପରେ 'କିଛି ଭାବିବେ ନାହିଁ'ରୁ ଆରମ୍ଭ କରି ଯାହା କହିଲେ, ତା'ର ସାରମର୍ମ ହେଉଛି ଯେ ତାଙ୍କ ପୁଅର ସେଦିନ ବିବାହ ଚତୁର୍ଥୀ । ସେ ଭୁଲିରେ ତାଙ୍କୁ ନିମନ୍ତ୍ରଣ କରି ନାହାନ୍ତି । ଯଦିଓ ସେ ଜାଣିଛନ୍ତି, ଖାଇବା ପହରର ରାତି ଅନେକ ଆଗରୁ ଆଗେଇ ଯାଇଛି ଏବଂ ତେଣୁ ଯେକୌଣସି ସ୍ୱାଭାବିକ ଲୋକ ନିଶ୍ଚୟ ଖାଇ ସାରିଥିବେ, ତଥାପି ସେ ଡାକି ଆସିଛନ୍ତି । ହୁଏତ ବଙ୍କବିକାଶବାବୁଙ୍କ ନିମନ୍ତ୍ରଣ କରିହେଇନି ବୋଲି ଅନ୍ୟ କେହି ଅତିଥି ପଡ଼ୋଶୀଙ୍କୁ ସୂଚେଇ ଦେଇ ତାଙ୍କୁ ଡାକିବାକୁ ଏକ ମାନସିକ ବାଧ୍ୟତା ଦେଇ ପାରିଥାଏ । ତେଣୁ ଆପଣାର ଅବିଜ୍ଞାନ ସ୍ୱରକୁ ଧରି ନ ପକାଇବା ପାଇଁ ସେ ଆସି ଡାକିବାକୁ ଉଚିତ୍ ମନେ କରିଛନ୍ତି । ବଙ୍କବିକାଶବାବୁ କିଛି ଖାଇବେ ନାହିଁ ବରଂ ନିମନ୍ତ୍ରଣ ରକ୍ଷା କରିବାକୁ କିଛି ନ ଭାବି ବାହାରି ପଡ଼ନ୍ତି । ପୁଣି କେବେ ଏଇମିତି । କୌଣସି ଏକ ସାଂସ୍କୃତିକ ଉତ୍ସବରେ ତାଙ୍କର ଜଣେ ବନ୍ଧୁ ତାଙ୍କ ପାଖରେ ପହଞ୍ଚି ସେହି ଅତି ପରିଚିତ 'କିଛି ଭାବିବେ ନାହିଁ' ପରେ ଉଦ୍ଦେଶ୍ୟ ଜ୍ଞାପନ କଲେ ଯେ ଉତ୍ସବର ମୁଖ୍ୟବକ୍ତା ଏତେବେଳଯାଏଁ ପହଞ୍ଚି ପାରିଲେ ନାହିଁ । ତାଙ୍କୁ ଯାଇଁ ସେ ରେଲ୍‌ଷ୍ଟେସନକୁ ଉଠିବାକୁ ପଡ଼ିବ ଏବଂ ଏଥିପାଇଁ ସେ କିଛି ଭାବିବେ

ନାହିଁ । ସେତେବେଳେ ବଙ୍କବିକାଶବାବୁ ଷ୍ଟୋଭ ଉପରେ ଡାଲି ମୁଠେ ବସାଇଛନ୍ତି । ତାଙ୍କୁ ହାତରେ ବେଷେଇ କରିବାକୁ ପଡ଼େ । ପ୍ରଥମେ ପ୍ରଥମେ ପିଅନଟି ତାଙ୍କ ପାଇଁ ମୁଠେ ଫୁଟାଇ ଦେଉଥିଲା । ତା ପରେ ବନ୍ଧିରେ ଡେଙ୍ଗୁଳ୍ପି ଶେଉଳ ମାରିବା କୌଶଳର କାରବାର ପିଅନ ପୁଙ୍ଗବ ଆରମ୍ଭ କରିଦେଲେ । ବଙ୍କବିକାଶବାବୁ ସତର୍କ ହେବାର ସୁଙ୍ଗୁରି ପାଇ ସେ ମହା ହୁସିଆର ମହାଶୟ, ଅପସରି ଗଲେ । ଅବଶ୍ୟ ତାଙ୍କର ସେହି ଦେହସୁଦ୍ଧା ମନ୍ତବ୍ୟ ଦେଇ ଯେ—କିଛି ଭାବିବେ ନାହିଁ ସାର୍, ରୋଷେଇବାସ କରିବାକୁ ଆଜିକାଲି ମୋ' ଦେହ ଆଉ ପାରୁନାହିଁ । ବଙ୍କବିକାଶବାବୁ ବି କିଛି ନ ଭାବି ସ୍ୱପାକ ପାଇଁ ନିଜକୁ ସଜଳ କରିନେଲେ । ହଁ, ବଙ୍କବିକାଶବାବୁ ଡାଲିଗଣ୍ଡାକ ଷ୍ଟୋଭ ଉପରେ ବସାଇଛନ୍ତି । ବନ୍ଧୁ ଆସି 'କିଛି ଭାବିବେ ନାହିଁ'ର ଶେଣି ବାନ୍ଧି ମୁଖ୍ୟବକ୍ତା ହେବାର ଅନୁରୋଧ ତାଙ୍କ ଉପରେ ଲଦି ଦେଲେ । ଅଧା ସିଝା ଜାଇକୁ ଷ୍ଟୋଭ ଉପରେ ସ୍ଥିତାବସ୍ଥାରେ ଅଟକାଇ ଦେଇ ଷ୍ଟୋଭ ଲିଭାଇ ସେ ବକ୍ତାର ଆଟୋପ ନେଇ ଉତ୍ସବ ପ୍ରାଙ୍ଗଣରେ ହାଜର ହେଲେ । ବନ୍ଧୁ ଓ ଅନ୍ୟାନ୍ୟ ଉଦ୍ୟୋକ୍ତା ସୋଦରବର୍ଗ ସେ କିଛି ନ ଭାବି ଆସିଥିବାରୁ କୃତକୃତ୍ୟ ହେଲେ । ତା'ପରେ ଠିକ୍ ସଭା ଆରମ୍ଭ ଆଗରୁ ବନ୍ଧୁ ଜଣଙ୍କ ଆସି ତାଙ୍କ ପାଖରେ ଫୁସ୍‌ଫୁସ୍ କରି କହିଲେ ଯେ, ନିର୍ଦ୍ଧାରିତ ମୁଖ୍ୟବକ୍ତା ଯାହାହେଉ ଆସି ଶେଷମୁହୂର୍ତ୍ତରେ ପହଞ୍ଚିଲେ । ସେ କିଛି ଭାବିବେ ନାହିଁ । ବଙ୍କବିକାଶବାବୁ କିଛି ନ ଭାବିକ ସିଧା ବସାକୁ ଆସି ଅଧାସିଝା ଜାଇକୁ ପୂର୍ଣ୍ଣ ରୂପ ଦେବାକୁ ଷ୍ଟୋଭ ଜାଳି ବସିଲେ ।

ଆଉ ଥରେ ଏପରି ଗାଁରେ ରଜ ଉତ୍ସବକୁ ଉଦ୍‌ଘାଟିତ, ଉଚ୍ଛ୍ୱସିତ, ଉଦଗ୍ର କରିବାକୁ ସମସ୍ତଙ୍କୁ ଥିଏଟର୍ ମାଡ଼ିଲା (ଝାଡ଼ା ମାଡ଼ିବା ପରି) ତା'ପରେ ସେହି କିଛି ଭାବିବେ ନାହିଁ । ସେ ମୁଖ୍ୟ ନାୟକ ଭୂମିକାଟା ନନେଲେ ସବୁ ଉତ୍ସାହ ଫସର ଫାଟିଯିବ । ଯଦିଓ ତାଙ୍କ ବୟସଟା ନାୟକ ହେବାର ପରିଧିକୁ ଡେଇଁ କିଛିଟା ପାକଳ ହୋଇଯାଇଛି, କିଛି କ୍ଷତି ନାହିଁ, ମୁହଁର ହନୁହାଡ଼ ଠିକ୍ ଅଛି, ମେକପ୍‌ରେ ଧରାପଡ଼ିବ ନାହିଁ, ଇତ୍ୟାଦି ଇତ୍ୟାଦିର ବହୁ ବିସ୍ତୃତ ବିବେଚନା, ବିଶେଷ କଥନର ବିସ୍ତାନ

ପରେ ସାବ୍ୟସ୍ତ ହେଲ ଯେ ବଙ୍କବିକାଶବାବୁଙ୍କର ନାୟକ ହେଇ ମଞ୍ଚମଣ୍ଡନ କରିବା ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଏକ ସର୍ବସମ୍ମତ ସିଦ୍ଧାନ୍ତ । ତେଣୁ ସେ ନାୟକ ହେବାକୁ ନ୍ୟାୟତଃ ବାଧ୍ୟ ଏବଂ ସେ କଚ୍ଛ ଭାବିବେ ନାହିଁ । ସ୍ୱେ କଚ୍ଛ ନଭାବିକ ରିହର୍‌ସେଲରେ ନାୟକର ଉତ୍ତାପ, ଉଦ୍ଦୀପନା ନେଇ ଠିଆ ହେଲେ । ରିହଅରସେଲ ଗ୍ରୁଲିଲା । ହଠାତ୍ ଅକସ୍ମାତ ଏକ ସାଙ୍ଗଠନିକ ଗଣ୍ଡଗୋଳହେତୁ ପୁଣି ସେହି କଚ୍ଛ ଭାବିବେ ନାହିଁର ଆବିର୍ଭାବ । ଅର୍ଥାତ୍ ଏମ୍.ଏଲ୍.ଏ.ଙ୍କ ଖୋଦ ସହୋଦର ଓରଫ୍ ଅନୁଷ୍ଠାନର ଚଫ୍ ଫାଇନାନ୍‌-ସର ତଥା ସଙ୍ଗଠନ ମେଗ୍ନେଟ୍ ଆଭିଜାତ୍ୟ ଓ ଅଭିମାନର ଇମୋସନ୍ ନେଇ ବାଆଁରେଇ ବାଆଁରେଇ ଜଣେଇ ଦେଲେ ଯେ ତାଙ୍କର ହିରୋ ହେବାର ଆବଶ୍ୟକୀୟ ବାଇଓଡ଼ାଟା ସମସ୍ତଙ୍କଠୁଁ ଯଥେଷ୍ଟ ବେଶୀ ଏବଂ ଜବରଦ୍ କରିବାର ଇଗୋ ଉପରେ ଚୂନ ପୋଛି ମଡ଼େଇ ତାଙ୍କ ଦେହପା ଦୃଷ୍ଟିରୁ ଏଣିକ କାମ ଭୁଲାଇବାକୁ ଏକାନ୍ତ ଅପାରଗ ବୋଲି ବିସ୍ତାର ଡ଼କାର ମାରିଲେ । ଅତଏବ 'କଚ୍ଛ ଭାବିବେ ନାହିଁ'ର ବଧୁ ବାନ୍ଧ ପରେ ସେ କଚ୍ଛ ନଭାବିକ ନାୟକ ଆସନରୁ ଓହରି ଆସିଲେ । ତାପରେ କଚ୍ଛ ଭାବିବେ ନାହିଁ ଫେରରେ ପଡ଼ି ବଙ୍କବିକାଶବାବୁ ନାୟକର ଗୃକର ଭୂମିକାରେ ଅଭିନୟ ଘୋଷିଲେ । ପୁଣି ସାଙ୍ଗଠନିକ ସଙ୍କଟ । ବହୁ ଦୃଶ୍ୟରେ ନାୟକଙ୍କ ସହିତ ତାଙ୍କର ବାରମ୍ବାର ଆବିର୍ଭାବ ହିରୋଙ୍କ ମନରେ ହୀନମନ୍ୟତା ଆଣିଲା ବୋଧହୁଏ । ପୁଣି ତାଙ୍କର ବୈରାଗ୍ୟର ହିକ୍କା ଉଠିଲା । ପୁଣି 'କଚ୍ଛ ଭାବିବେ ନାହିଁ'ର ପୋହୁଳ ତାଙ୍କ ଉପରେ ପକାଗଲା । ସେ ବି କଚ୍ଛ ନଭାବି ଅତି ସୁନ୍ଦର ଭାବରେ ଧରା ଦେଲେ ଏବଂ ସିନ୍ ଟଣା ଦାୟିତ୍ୱକୁ ଶେଷ ସ୍କ୍ରିନ୍ ପଡ଼ିଲା ପର୍ଯ୍ୟନ୍ତ ସୁରୁଖୁରୁ ରୂପେ ସମ୍ଭାଳି ନେଲେ ।

ଏ ତ ସବୁହେଲା କଚ୍ଛ କରେଇବା ପାଇଁ ମତଲବମାନଙ୍କର 'କଚ୍ଛ ଭାବିବେ ନାହିଁ' ରୂପକ ପ୍ରାକ୍ କଥନ । 'କଚ୍ଛ ଭାବିବେ ନାହିଁ'ର ଅନ୍ୟ ପ୍ରକାରର କର୍ମ ପରର ଆଗମନ ମଧ୍ୟ ରହିଛି ।

ଆପଣ କଚ୍ଛ ଭାବିବେ ନାହିଁ । ଘରୁ ଭାଉଜଙ୍କୁ କହି ଆପଣଙ୍କ ସାଇକେଲ୍‌ଟା ନେଇ ଆସିଥିଲି । ଭାଉଜ ବି ମନା କରୁଥିଲେ । ତାଙ୍କ ମନା

ବା କିଏ ମାନୁଛି ? ନା, କଣ କହୁଛନ୍ତି ? କଥାଟା କ'ଣକି ସାଇକେଲ୍‌ଟା ଦେଇ ପୁଅକୁ ହାଟକୁ ପଠାଇଥିଲି । ଗୁଡ଼ଜଳ କିଛି ଆଣିବାର ଥିଲା । ସାଇକେଲ୍‌ଟା ବୋଧହୁଏ ଜଖମ ଥିଲା । ତାପରେ ଦୈବଯୋଗକୁ ଗୋଟେ ରିକ୍‌ସା ସାଙ୍ଗରେ ଏକ୍‌ସିଡେଣ୍ଟ ହୋଇଗଲା । ସାଇକେଲଟା ଭାଙ୍ଗି ଯାଇଛି, କିଛି ଭାବିବେ ନାହିଁ । ସାଇକେଲଟା ସଜାଡ଼ି ନଅନ୍ତୁ । ମୁଁ ଦୁଇ ଚାରି ମାସରେ ହାଉଳେ ହାଉଳେ ଟଙ୍କାଟା ଦେଇଦେବି । କିଛି ଭାବିବେ ନାହିଁ ସତେ । କିଛି ନ ଭାବିବାକୁ ଅତି ଅଭ୍ୟସ୍ତ ବଙ୍କବିକାଶ ବାବୁ ସାଇକେଲ ସଜାଡ଼ିବାକୁ ପ୍ରସ୍ତୁତ ନେଇଥିଲେ ।

'କିଛି ଭାବିବେ ନାହିଁ'ର ବହୁରୂପୀ ଆବର୍ତ୍ତ ଉପରେ କିଛି ନ ଭାବିବାକୁ ବଙ୍କବିକାଶ ବାବୁ ଅଭ୍ୟାସ କରି ନେଇଛନ୍ତି । 'କିଛି ଭାବିବେ ନାହିଁ'କୁ ଭାବି ନିଜକୁ ଭାରାକ୍ରାନ୍ତ କରିବାକୁ ସେ ଆଦୌ ପସନ୍ଦ କରୁନଥିଲେ । ବାହାରର 'କିଛି ଭାବିବେ ନାହିଁ'ର ବହୁ ଶରସନ୍ଧାନକୁ ସେ ଅତି ଆରାମରେ ପାର କରିଦେଇ ଆସିଛନ୍ତି । କିନ୍ତୁ ଘର ଭିତରର ଅବିରତ କିଛିନା ର ବର୍ତ୍ତମାନ ତେତିଶ ବର୍ଷ ହେଲା ତାଙ୍କ ମନକୁ ଦାରୁଣ ଭାବରେ ଖୋଞ୍ଚି ଖୋଞ୍ଚି ତାଙ୍କ ଚିନ୍ତାକୁ ରକ୍ତାକ୍ତ କରିଚାଲିଛି । ବଙ୍କବିକାଶବାବୁ ଓ ମାନସ ମୋହିନୀଙ୍କ ସଂଯୁକ୍ତ ଜୀବନ ତେତିଶରେ ପଦାର୍ପଣ କଲା ।

କାନ୍ଦୁଛ ?
କିଛିନା,
ରାଗିଛ ?
କିଛିନା ?
କଣ ହେଉଛି ?
କିଛିନା ।
ମନ କଷ୍ଟ ?
କିଛିନା ।
ମାନ କରିଛ ?
କିଛିନା ।
ଭଲ ଲାଗୁନି ?
କିଛିନା ।

ଭୁଲ କରିଛି ?

କଳ୍ପନା ।

ବର୍ଷ ବର୍ଷ ଧରି ମାନସମୋହିନୀଙ୍କ ସମସ୍ତ ଉତ୍ତର କେବଳ 'କଳ୍ପନା'ରେ ଶେଷ ହୋଇଛି । ଭୟଙ୍କର ଏ 'କଳ୍ପନା' ବ୍ୟାଧି । ଉପଶମ ପାଇଁ ବଙ୍କବିକାଶବାବୁଙ୍କ ଅନେକ ଅନୁଧ୍ୟାନ, ବିଭିନ୍ନ ଉପଗ୍ରହ ସବୁବେଳେ ବ୍ୟର୍ଥ ହୋଇ ଫେରି ଆସିଛି । ଅସହ୍ୟ ଏ ଆତ୍ମସମର୍ପଣ । ଜୀବନ ତାଙ୍କୁ ବେଳେ ବେଳେ ଅସମ୍ଭବ ମନେ ହେଉଛି । ନବବଧୂ ମାନସମୋହିନୀଙ୍କ ଏହି କଳ୍ପନା ଭିତରୁ ବଙ୍କବିକାଶ ବାବୁ ତାଙ୍କର ପ୍ରଥମ ବିବାହିତ ଜୀବନରେ କଳ୍ପଟା ରୋମାନ୍ସ କଳ୍ପଟା ଫେମିନିଟି କଳ୍ପଟା ଫାଇନଟିର ଗନ୍ଧ ପାଉଥିଲେ । ଗ୍ରେଟପିଲ୍ ଖଣ୍ଡିଖଣ୍ଡିଆ କଥା କହିଲେ ଯେମିତି ମିଠା ଲାଗେ । କିନ୍ତୁ ତେତିଶ ବର୍ଷରେ ଯଦି ପା ି ଲାଗେ, ଏପରିକି ଅସୁସ୍ଥତା ଛଡ଼ା ଅନ୍ୟ କିଛି ଭାବିବାକୁ ବଙ୍କବିକାଶ ବାବୁ ଅନନ୍ୟୋପାୟ ଥିଲେ । ସେ ପ୍ରତିବାଦ ଗୁହୁଁ ଥିଲେ । ପ୍ରତିରୋଧ ଖୋଜୁଥିଲେ । ପ୍ରତି-ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲେ । ମାନସମୋହିନୀ ପଥର ଖଣ୍ଡପରି ବସିଥିଲେ । କୋଣାର୍କର ପଥର ନାୟିକାକୁ ନେଇ ମିଉଜିଅମ୍ ସଜା ଯାଇପାରେ, ବଞ୍ଚି ହେଇ ହୁଏନା । ସ୍ତ୍ରୀର ଏମିତି ମୁଣ୍ଡପାତି ନେବା, ଏପରି ଅତି ବାଧ୍ୟତାର ଅଭିନୟ ତାଙ୍କର ପୁରୁଷାର୍ଥକୁ ବିଦ୍ରୂପ କରୁଥିଲା । ମଲା ଶିକାର ଖାଇ ଖାଇ ଗଧିଆ ଭଳି ବଞ୍ଚିବାର ବ୍ୟର୍ଥତାକୁ ତାଙ୍କ ବାଘର ଆତ୍ମା ବରଦାସ୍ତ କରିପାରୁ ନଥିଲା । ଏପରି ନିସ୍ପନ୍ଦତାରେ, ଏମିତି ନିର୍ବିବାଦରେ ତାଙ୍କର ପୌରୁଷ ହାହାକାର କରି ଉଠୁଥିଲା ।

ଏଇ ରୁଦ୍ରମାଧବବାବୁଙ୍କ ମିସେସ୍ ଆର୍ଦ୍ରା ଅରୁନ୍ଧତୀ ଦେଖ । କି ଭୟଙ୍କର ଇଗୋର ମଣିଷ ! ଆଉ ରୁଦ୍ର ମାଧବବାବୁଙ୍କର କି ଭୟ ମିଶା ମଧୁରତା । ସମସ୍ତଙ୍କ ଆଗରେ ନିର୍ବିଘ୍ନରେ ମିସେସ୍ ତାଙ୍କୁ କଥାରେ କଥାରେ ଠକିର ଦିଅନ୍ତି । ଆଉ ରୁଦ୍ରମାଧବବାବୁ ହୋ ହୋ ହସି ହସି କେତେ ଉପଭୋଗ କରନ୍ତି ! ବଙ୍କବିକାଶବାବୁଙ୍କ ମନ ଭିତରେ ଖଣ୍ଡି ଆଭୂତ ଘୂରେ । ଆର୍ଦ୍ରା ଅରୁନ୍ଧତୀଙ୍କ ଆଡ଼କୁ ହାତ ବଢ଼େଇବାକୁ ବାହୁମୂଳ ତାଙ୍କର ଉଛନ୍ନ ହୋଇପଡ଼େ । ସେ ଶଙ୍କି ଯା'ନ୍ତି । ହାତରେ ଧରିଥିବା ଜଳଷଟାକୁ

ସିନା ଗୁଡ଼ଦେଲେ ଆଉ କଣ୍ଟ ଧରିବ । ହାତ ଭିତରେ ଉତ୍ତମର ଶୋଇ ପଡ଼ିଥିବା ଠେକୁଆ ଛୁଆଟିକୁ ଫୋପାଡ଼ ଦେବାକୁ ତାଙ୍କର ମୋଟେ ସତ ବିକ୍ତ ନ ଥିଲା । କହିବାକୁ ଗଲେ ତାଙ୍କର ମାନସିକ ସାମର୍ଥ୍ୟ ନ ଥିଲା ।

ସ୍ତ୍ରୀ ଗୋଟିଏ ଗାଈ । ବିବାହରୂପକ ରସିରେ ସ୍ୱାମୀ ନାମକ ଖୁଣ୍ଟରେ ତାକୁ ବାନ୍ଧି ଦିଆଯିବ ଏବଂ ନାରୀଧର୍ମର ଅର୍ଫିମ ଗିଳି ଗିଳି ଗାଈଟି ଟିକିଏ ବି ଉଁ ଚୁଁ ନ ହୋଇ ଡ଼ୋଳାଇ ଡ଼ୋଳାଇ ସେ ଖୁଣ୍ଟର ଚାରିପାଖରେ ମଲାପର୍ଯ୍ୟନ୍ତ ଘୂରି ବୁଲିବ ? ପୁରୁଷପ୍ରଧାନ ସମାଜର ଏବଂବିଧ ବିଧିବିଧାନରେ ଦେହର କ୍ଷୁଧା ମେଣ୍ଟି ଯାଇପାରେ । ପୌରୁଷର ଆସ୍ଫାଳନ କ'ଣ ପରିତୃପ୍ତି ପାଇବ ? ବଙ୍କବିକାଶବାବୁଙ୍କ ମନ ଉପରେ ସଂଶୟର ଅଳନ୍ଧୁ ଜମି ଜମି ଯାଏ ।

ବଙ୍କବିକାଶବାବୁ ତାଙ୍କର ତେତିଶିତମ ବିବାହବାର୍ଷିକୀ ମନାଇବା ପାଇଁ ମାନସିକ ପ୍ରସ୍ତୁତି ନେଉଥିଲେ । ଗତ ବତିଶ ବର୍ଷର ଉତ୍ସବ ପାଳନର କର୍ମସୂଚୀରେ ଏକ ନିର୍ଦ୍ଦିଷ୍ଟ ଗତାନୁଗତିକତା ଥିଲା । ଏହି ଉତ୍ସବ ଦିନଟିକୁ ସେ ଅଭିଜାତ ପର୍ଯ୍ୟାୟ ଦେବାକୁ ଯାଇ ଅତିଥି-ଆଗମନ, ଆତିଥ୍ୟଦାନ, ସୌଜନ୍ୟ-ପ୍ରତିଦାନ, ପାନ, ପ୍ରୀତି-ନୃତ୍ୟ ଇତ୍ୟାଦି ଇତ୍ୟାଦିର ଉପକ୍ରମ ସେ ଯେ କଦାପି କରି ପାରିବେ ନାହିଁ, ସେ ଭଲ କରି ଜାଣିଥିଲେ । ଏତାଦୃଶ କାର୍ଯ୍ୟାନୁଷ୍ଠାନ ପାଇଁ ସେ ଯେ ଅକ୍ଷମ ଥିଲେ କିମ୍ବା ତାଙ୍କର ଯେ ରୁଚିବୋଧ ନ ଥିଲା; ତା' ନୁହେଁ, ଶ୍ରୀମତୀ ଆଦ୍ରି । ଅରୁନ୍ଧତୀଙ୍କ ବିବାହ ବାର୍ଷିକୀର ସେ ପ୍ରକାରର ଆମୋଦ ଆସରରେ ସେ ଏକ ବିଶେଷ ଅଂଶ ନେବାକୁ କେମିତି ବାଧ ହୋଇ ପଡ଼ୁଥିଲେ । ଯଦିଓ ଉତ୍ସବର ସେପରି ସବୁ ବିକଳ ଅଙ୍ଗପ୍ରତି ତାଙ୍କର ଅନେକଟା ଭୟ ଥିଲା ।

ବିବାହ ବାର୍ଷିକୀ ଦିନ ମାନସମୋହିନୀଙ୍କୁ ସେ ଖଣ୍ଡିଏ ଶାଢ଼ୀ ଉପହାର ଦେଉଥିଲେ । ସେଥିପାଇଁ ତାଙ୍କୁ ସ୍ୱୟଂ ଏକକ ଭାବରେ ମାର୍କେଟିଂ କରିବାକୁ ପଡ଼ୁଥିଲା । ମାନସମୋହିନୀ ଏ ଉପହାର ପାଇଁ କୌଣସି ଆଗ୍ରହ ବା ଆବଶ୍ୟକତା ପ୍ରକାଶ କରୁନଥିଲେ । ରୂପମ୍, ସତ୍ୟମ୍ ଶିବମ୍ ସୁନ୍ଦରମ୍, ବିଉଟି ପେରେଡ଼, ଫେସନ୍ ମହଲ ପ୍ରଭୃତି ଦୋକାନମାନଙ୍କରୁ ମନ ତାଙ୍କର

ଖସର ଖସର ଆସି ଏବେ ସମ୍ବଲପୁରୀ ବସ୍ତ୍ରାଳୟରେ ଅଟକି ଯାଇଛି । କାରଣ ସେ କେବଳ ଶାଢ଼ୀର କ୍ରେତା ନୁହନ୍ତି, ସେ ମଧ୍ୟ ପସନ୍ଦକର୍ତ୍ତା । ମାନସମୋହିନୀଙ୍କ ବୟସ ଓ ଦେହକୁ ସଜାଇଲାଭଳି କେମିତିକା ଯେ ଦରକାର, ସେଥିପାଇଁ ତାଙ୍କର ଏସ୍‌ଥେଟିକ୍ ସେନ୍‌ସ୍ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ତାଙ୍କର ସିଲେକ୍‌ସନ କେତେଦୂର ଯଥାଯଥ ଜାଣିବାକୁ ସେ ବ୍ୟଗ୍ର ହୋଇପଡ଼ନ୍ତି । ମାମୋ ସାଙ୍ଗେ ସାଙ୍ଗେ ଶାଢ଼ୀଖଣ୍ଡିକ ଟାଣିନେଇ ଅଳ୍ପ ହସି ପିନ୍ଧି ପକାନ୍ତି । ଆଉ ସେ ଖୁବ୍ ଦେଖାନ୍ତି । (ମାନସମୋହିନୀଙ୍କୁ ସେ ପ୍ରଥମ ବାସର ରାତିରେ 'ମା ମୋ' ବୋଲି ଡାକିବାକୁ ଅନୁମତି ମାଗି ନେଇ ଆଜଯାଏଁ ସେହି ନାଁରେ ଡାକନ୍ତି) କିନ୍ତୁ ମାନସମୋହିନୀ ଶାଢ଼ୀ ଖଣ୍ଡିକ ମଙ୍ଗଳା କଳସ ଉପରେ ଦେଇ ମା'ଙ୍କ କଲ୍ୟାଣ ଆଦାୟ କରୁ କରୁ ବିଜ୍ଞବିକାଶବାବୁଙ୍କ ସୌକ୍‌ର ପାରା ବିଲୋ-ନର୍ମାଲ୍ ହୋଇ ସାରିଥାଏ ।

ଦ୍ୱିତୀୟ ପ୍ରୋଗ୍ରାମ୍‌ଟି ତାଙ୍କର ଥିଲା, ସେ ସେଦିନ ମାନସମୋହିନୀଙ୍କ ମୁହଁରୁ 'କିଛୁନା' ନ ଶୁଣିବାକୁ ଆପ୍ରାଣ ଚେଷ୍ଟା କରନ୍ତି । ଅନେକ ଥର ହାରିଯିବାର ଅବଶୋଷ ଥିଲେ ବି ଜିଣିଯିବାର ଭବିଷ୍ୟତକୁ ସେ ଉପେକ୍ଷା କରିପାରନ୍ତି ନାହିଁ । ଅନ୍ତତଃ ସେହି ଦିନଟାରେ ମାନସମୋହିନୀଙ୍କୁ ହାଲକା କରି ହସାଇବାକୁ ଅଧ୍ୟବସାୟୀ ସେ ଅନେକ ବର୍ଷ ହେଲା କରି ଆସିଛନ୍ତି । ନିଜର ପରାଜୟରେ, ମନର ବିତୃଷ୍ଣାରେ, ଆର୍ଦ୍ରା ଅରୁନ୍ଧତୀଙ୍କ ଆକର୍ଷଣରେ, ତାଙ୍କର କ୍ଲାନ୍ତି ଆସେ । ତଥାପି କ୍ଲାନ୍ତିରୁ ପଛେଇ ଦେବାପାଇଁ ଚେଷ୍ଟାର ଯୁଦ୍ଧ ଚଳାନ୍ତି ।

ଏଥର ତେତିଶତମ ବିବାହ ବାର୍ଷିକୀର କାର୍ଯ୍ୟସୂଚୀରେ କିଛୁଟା ନୂତନ ଯୁକ୍ତ କରିବାକୁ ମନ ତାଙ୍କର କାହିଁକି ବାଧ କଲା । ମଙ୍ଗଳାଙ୍କ କଳସରୁ ଆଶିଷ ଆଣିବା ପାଇଁ ଶାଢ଼ୀ ତ ଅବଶ୍ୟ ଆସିବ । ତା'ଛଡ଼ା ଦି' ଚାରିଜଣଙ୍କୁ ଡାକି ସାମାନ୍ୟ ଖିଆପିଆର କିଛୁଟା ବନ୍ଦୋବସ୍ତ କଲେ, ମନ୍ଦ ହୁଅନ୍ତା ନାହିଁ । ଆଭିଜାତ୍ୟର ଅନୁଷ୍ଠାନ ପାଇଁ ପ୍ରଶ୍ନ ତ ଉଠୁନି । ସୌଜନ୍ୟର ଏଇ ମାମୁଲି ଇଚ୍ଛାଟାକୁ ସେ ଫାଙ୍କିଦେଇ ପାରିଲେ ନାହିଁ । ହୁଏତ ବନ୍ଧୁଙ୍କ ଗହଣରେ ମାମୋ ତାର ଏଲିମେଣ୍ଟକୁ ଫେରିଆସି ପାରିବ ।

ବେଶି କଷ୍ଟ କରିବାର ନାହିଁ । ଅଧିକ ଲୋକ ବି କେହି ଆସିବେ ନାହିଁ । ଆର୍ଦ୍ରା ଅରୁନ୍ଧତୀ ତ ନିଶ୍ଚୟ । ଆଉ ଏଇ ରୁଦ୍ରମାଧବବାବୁ, ପିଙ୍କୁ, ବହିଦାର, ତା' ହସକୁଳୀ ଭଉଣୀ ପ୍ରୀତିପାଖୁଡ଼ା, ଆଉ ଖୁବ୍ ବେଶି ହେଲେ ତାଙ୍କ ଅଫିସର ଦି'ଜଣ ଅନ୍ତରଙ୍ଗ ।

ମାନସମୋହିନୀଙ୍କୁ ତାଙ୍କର ଏତାଦୃଶ ଇଚ୍ଛାର ଯାଥାର୍ଥ୍ୟ ଉପରେ କିଛି ବିଶ୍ଳେଷଣ ଦେବାକୁ ତାଙ୍କର ସ୍ୱାମୀର ମନ ସ୍ୱୀକାର କଲାନାହିଁ । ସେ କିଛିଟା ଗମ୍ଭୀର ହୋଇ କେବଳ ସମୟ, ଅତିଥିଙ୍କ ସଂଖ୍ୟା ଓ ଖାଇବାର ଆଇଟମ୍ ଉପରେ ସୂଚନା ଦେଇ ଘରୁ ବାହାରିଗଲେ । ଯାଉଁ ଯାଉଁ କହିଦେଇଗଲେ ଅତିଥିମାନଙ୍କୁ ଆତିଥ୍ୟ ଦେବାରେ ଟିକିଏ ଯେମିତି ଅସୁବିଧା ନହୁଏ । ଏଥର ତାଙ୍କ ସ୍ୱରରେ ଗୃହକର୍ତ୍ତାର ଉତ୍ତାପ ଥିଲା ।

ସେଦିନ ଆସିଲା । ସେ ସମୟ ବି ଆସିଲା । ଅତିଥିମାନେ ଆସିଲେ । ଆର୍ଦ୍ରା ଅରୁନ୍ଧତୀଙ୍କ ଘରପାଇଁ ଓ ଗୃହିଣୀରୁ ବିଙ୍କବିକାଶବାବୁ ଅନେକ କିଛି ଶୁଣିଥିଲେ । ମାନସମୋହିନୀ କିନ୍ତୁ ଶୋଇ ରହିଥିଲେ । ତାଙ୍କର ଉପସ୍ଥିତି ପାଇଁ ସମସ୍ତେ ବେଶି ବେଶି ଆଗ୍ରହୀ ହୋଇ ପଡୁଥିଲେ । ମାନସମୋହିନୀ କିନ୍ତୁ ଉଠୁ ନଥିଲେ ।

ପ୍ରୀତି-ପାଖୁଡ଼ା କ'ଣ ଭାବି କେଜାଣି, ଚେୟାର ଛାଡ଼ିଲେ, ଭାଉଜ ବୋଧହୁଏ ଖଟି ଖଟି ହାଲିଆ ହୋଇ ପଡ଼ିଛନ୍ତି । ଚାଲନ୍ତୁ ରୋଷେଇ ଘରକୁ । ବିଙ୍କବିକାଶ ବାବୁ ପଛେ ପଛେ ରୋଷେଇ ଘରେ ପଶିଲେ ।

ତାଙ୍କ ନିର୍ଦ୍ଦେଶର ଟିକିଏ ବି ଉଣେଇଶ ବିଶ ହୋଇନି । ସବୁ ଆଇଟମ୍ ଠିକ୍ ଠିକ୍ ପ୍ରସ୍ତୁତ ହୋଇ ଥୁଆ ହୋଇଛି । ପ୍ରୀତିପାଖୁଡ଼ା ହୋଷ୍ଟେସ୍‌ର ଭୂମିକା ନେଇ ମୁହଁରେ ହସ ଓ ହାତରେ ଚାମଚ ଧରିଲେ । ଆତିଥ୍ୟ ପାଇ ଅତିଥିମାନେ ଫେରିଗଲେ ।

ମାନସମୋହିନୀଙ୍କ ବ୍ୟବହାର ପଛରେ ତାଙ୍କ ଇପ୍ସିତ ସ୍ୱରର ସନ୍ଧାନ ପାଇ ବିଙ୍କବିକାଶବାବୁ ଉତ୍ଫୁଲ୍ଲ ହୋଇ ପଡ଼ିଲେ । ଚେଷ୍ଟମାନେ ଯାହା ଇଚ୍ଛା ତାହା ଭାବନ୍ତୁ । ଆଜି ଦିନରେ ମାମୋ ଅନ୍ତତଃ

ଆଂଶିକ ଅସହଯୋଗର ଆବହାଓଆ ଆଣିଛୁ । ପ୍ରତିବାଦର ପରିସ୍ଥିତି ଦେଇଛୁ । ମାମୋ ଆଜ ସହିବାର ସୁସୁପ୍ତିକୁ ଫିଙ୍ଗିଦେଇ ପଦ୍ମତୋଳାର ପରିଧି ଭିତରୁ ନିଜକୁ କିଛି ଘୁଞ୍ଚାଇ ନେଇଛୁ ।

ବିଙ୍କିବିକାଶ ବାବୁ ନିଜକୁ ସଜାଗ କରିନେଲେ । ମନ୍ତ୍ର-ବୃତ୍ତର ଗାର ପାର ହୋଇ ନାଗୁଣୀ ଯେତେବେଳେ ନିଜକୁ ପାଇଛି, ତା ଲାଙ୍ଗୁଡ଼ରେ ସେ ହାତ ମାରିବେ । ତାକୁ ଭର୍ତ୍ସନା କରିବେ । ଅକ୍ଷମଣୀୟ ଅପରାଧ ତଥା ଅଭଦ୍ରାମିର ଦାହି ଦେଇ ସେ ମାମୋଙ୍କୁ ଆକ୍ରମଣ କରିବେ । ପ୍ରତି ଆକ୍ରମଣ ନେବେ ।

କ'ଣ ଏମିତି ସୁଆଙ୍ଗ କାଢ଼ୁଛ ? ଅସଲ ଦିନରେ ଏମିତି ସିଆଣିଆ ଶୁଆ ଶୋଇ ବନ୍ଧୁ ଦିନର ଅରମାନଟା ବୋଧହୁଏ ମେଣ୍ଟାଇ ନେଲେ ? ମୂଳରୁ ମତେ ସଫା ସଫା ମନା କରିଦେଲ ନାହିଁ ? ମତେ ଅପଦସ୍ଥ କରିବାର ମଉକାଟାକୁ ବୋଧହୁଏ ଅପେକ୍ଷା କରି ବସିଥିଲ ? ବିଙ୍କିବିକାଶ-ବାବୁ ସ୍ୱର ଅତି ଉତ୍ତପ୍ତ ହୋଇ ଉଠୁଥିଲା । ମାନସମୋହିନୀ ଚଦରଖଣ୍ଡିକ ଟାଣି ହୋଇ ସେଇମିତି ମଲାସାପ ପରି ପଡ଼ି ରହିଥିଲେ ।

ବିଙ୍କିବିକାଶବାବୁ ଖଟ ଆଡ଼କୁ ଧାଇଁ ଯାଇଁ ତାଙ୍କ ଦେହରୁ ଚଦରର ଖଣ୍ଡିକ ଟାଣି ଆଣିଲେ । ଇସ୍ ଦେହରେ କି ତାତି ! ଡାହାଣ ହାତର ପାପୁଲିଟି ପୂରାପୂରି ପୋଡ଼ିଯାଇଛି । ପାପୁଲିକୁ ଟାଙ୍କି ପକାଇ ଏକ ବିରାଟ ଫୋଟକା ଉଠିଲା ପଡ଼ିଛି ।

ମାନସମୋହିନୀ ଆସ୍ତେ ଆସ୍ତେ ଆଖି ଖୋଲିଲେ, ଆଖିରେ ଅନେକ କିଛି ଗୁହାରି, ଭୁଲ ଭୁଲର ଭୟ ।

ବିଙ୍କିବିକାଶବାବୁ ବ୍ୟସ୍ତତା ଭିତରେ ନିଜର ସ୍ୱାମୀ ସତ୍ତା ହଜାଇ ବସୁଥିଲେ । ଆହ୍ୱା । ଅରୁନ୍ଧତୀଙ୍କ ବେଶ, ହସ, ଅହଂବାଦ, ଅହମିକା, ତାଙ୍କ ଜୀବନ ରାସ୍ତାର ଯେତେ ଧୂଳି, ଦୂରକୁ ଦୂରକୁ କେଉଁ ଦିଗ୍‌ବଳୟ ସେପାରିର ଅରମା ଅପନ୍ତରା ଆଡ଼କୁ ଉଡ଼ି ଉଡ଼ି ପଳାଉଥିଲେ ଆଖିର

ପଶ୍ଚାତ୍ତାପର ଅନୁତାପର ଅଶ୍ରୁ ଜମି ଜମି ଓହ୍ଲାଇ ପଡ଼ିବାକୁ ଆରମ୍ଭ କରି ସାରିଥିଲା ।

ସେ ମାନସମୋହିନୀଙ୍କୁ ଟେକି ଆଣି ଗୁମ୍ଫଆଡ଼େ ଉଡ଼ି ଧରିଲେ । କ'ଣହେଲା ମାମୋ, କ'ଣ କଲୁ ମାମୋ-ବୋଲି ସେ ଅସହାୟ ଶିଶୁ ଭଳି ଚିତ୍କାର କରି ଉଠିଲେ ।

ଖୁବ୍ ଏକ କ୍ଷୀଣସ୍ୱରରେ କେବଳ ଉତ୍ତର ଆସିଲା—

କଳ୍ପନା ।



# ଅଙ୍ଗୁର ନୃତ୍ୟ

ରବିବାର ।

ଡେରିରେ ଘଣ୍ଟା ବଜେଇକି ଖାଇଦେଇ ଟିକିଏ ଆଣିକଡି ମେଣ୍ଟେଇବାକୁ ଗଡ଼ପଡ଼ ହେଉଁ ହେଉଁ ପିଲ୍ଙ୍କ ଗପ ବଖାଣେ ପଡୁଥିଲି ।

ଗପଟା ଏଇମିତି ଥିଲି—

ଦୁଷ୍ଟ ରାବଣକୁ ମାରି ସନ୍ଧି ପାଳିବାକୁ ରାମଚନ୍ଦ୍ର ମହାପ୍ରଭୁ ବିଭୀଷଣକୁ ଲଙ୍କା କଣ୍ଟକର ରାଜଗାଦି ଦେଲେ । ବାଣ, ବାଜା, ବଇରଖି, ରୋଷଣି, ନଉଛବ, ମଉଜମଜଲିସ୍ ଇତ୍ୟାଦି ଇତ୍ୟାଦି ହସଖୁସିର ହୋ ହାଲ୍ଲା ଭିତରେ ବିଭୀଷଣଙ୍କ ଅଭିଷେକ ପରବ ଖୁବ୍ ଧୂମଧଡ଼ାକ ଭିତରେ ବିତିଗଲ୍ । ସୀତାଠାକୁରାଣୀଙ୍କୁ ଧରି ରାମଚନ୍ଦ୍ର ମହାପ୍ରଭୁ ପୁଷ୍ପକ ବିମାନରେ ବିଜେହୋଇ ଅଯୋଧ୍ୟାକୁ ବାହୁଡ଼ି ଆସିଲେ । ରାମଙ୍କ ଅଭିଷେକ ଉତ୍ସବ ଦେଖିବା ପାଇଁ ହନୁମାନ ସମେତ ସମସ୍ତ ବାନରବାହିନୀ ଅଯୋଧ୍ୟାରେ ଆସି ହାଜର ହେଲେ । ସୀତା ଠାକୁରାଣୀଙ୍କୁ ଠାବ କରିବା, ସେତୁବନ୍ଧ ବାନ୍ଧିବା, ରାକ୍ଷସ ସଙ୍ଗେ ପ୍ରାଣମୁର୍କି ଲଢ଼ିବା, ଲକ୍ଷ୍ମଣଙ୍କୁ ବଞ୍ଚାଇବାଲଗି ଗନ୍ଧମାର୍ଦ୍ଦନ ମୁଣ୍ଡେଇକି ଆଣିବା—କେତେ କଷ୍ଟ ସତେ ମାଙ୍କଡ଼ମାନେ ସହିଛନ୍ତି ! ରାମଚନ୍ଦ୍ର ମହାରାଜା ମାଙ୍କଡ଼ମାନଙ୍କୁ ଗୋଟିଏ ଭୋଜି ଦେବାକୁ ବିଚାରିଲେ । ଦିନ ଧାର୍ଯ୍ୟ ହେଇଗଲ୍ । ମାଙ୍କଡ଼ମାନେ ସମସ୍ତେ ନିମନ୍ତ୍ରଣ ପାଇ ଭୋଜି ଜାଗାରେ ଆସି ଠିକଣା ବକତରେ ହାଜର ହୋଇଗଲେ ।

ଧାଡ଼ିରେ ପ୍ରଥମ ମୁଣ୍ଡରେ ହନୁମାନ ଚକା ପକାଇ ବସି ପଡ଼ିଲ୍ । ତା ପାଖକୁ ଅଙ୍ଗଦ, ତା ପରେ ନଳ, ନୀଳ, ସୁଷେଣ, ଇମିତି ହେଇ ଆପଣା ଆପଣା ଖାତିର ମୁତାବକ ସମସ୍ତେ ଆସନ ଧରିନେଲେ । ଧାଡ଼ିର ସବା ଶେଷରେ ସବୁଠୁଁ ଶ୍ରେଷ୍ଠ ପାତି ମାଙ୍କଡ଼ଟି ବସିପଡ଼ି ପାଟିରୁ ଓହଳି ଆସୁଥିବା ଲାଳ ସଡ଼କାକୁ ଢୋକୁ ଢୋକୁ କନ୍ କନ୍ ହୋଇ ଖାସ୍ ସରିଘର ଆଡ଼କୁ ଅନେଇ କରୁଥିଲି । ପତର ଉପରକୁ କେତେବେଳେ

ଖାଦ୍ୟ ସାମଗ୍ରୀମାନେ ବଳେ ହେବେ ? ଯାହା ହେଉ,ଅନେକ କିସମର ବସ୍ତୁ ବସ୍ତୁ ରଙ୍ଗ ବେରଙ୍ଗ, କଞ୍ଚା ପାକଲ, ଖଟା ମିଠା ଫଳ ଫୁଲୁରି ସବୁ ପରଷି ହୋଇଗଲା ! ହନୁମାନ ଆଚମନ କରି ହାତ ଚଳାଇବାରୁ ଫୁଣ୍ଡି ଫୁଣ୍ଡି ସମସ୍ତେ ହାତ, ହନୁ, ତନୁ, ସବୁକୁ ଚଳେଇ ଚଳେଇ ପତର ସଫା କରିବାକୁ ଲାଗି ପଡ଼ିଲେ ।

ଅସ୍ତ ବ୍ୟସ୍ତ ହୋଇ ଖାଉଁ ଖାଉଁ ଧାଡ଼ି ଶେଷରେ ବସିଥିବା କୁନି ପାଉଁଟା ଗୋଟିଏ ଅଙ୍ଗୁରକୁ ଚିପିଦେଲା । ଅଙ୍ଗୁର ଭିତରୁ ଗ୍ରେଟ ମଞ୍ଜି ଟାଏ ଉପରକୁ ପିଚକି ପଡ଼ିଲା । ପାଉଁ ମୁଣ୍ଡକୁ ପିଉ ଚଢ଼ିଗଲା । କେମିତି ? ହେମନ୍ତ କମ୍ ନୁହେଁ ? ଗ୍ରୀର ଛୁକର ମଞ୍ଜି ବୋଲି ବଳରେ ତା ଆଗରେ ପୁଣି ଫୁଟାଣି ଦେଖାଇ କୁଦି ପଡ଼ିଲା ? ସେ ଏତେ ଓଜନିଆ ? ଆଚ୍ଛା ଦେଖାଯାଉ । ପାଉଁ ଷାର ଲାଞ୍ଜ ପିଟି ଦେଇ ଉପରକୁ ଡ଼ିଆଁ ଟାଏ ମାରି ଦେଲା । ଏ ମେଞ୍ଚଡ଼ ଟୋକାର ଉଗ୍ରରୂପ ଦେଖି ତା ପାଖର ମାଙ୍କଡ଼କୁ ବାଧିଗଲା । ଏତେ କାଡ଼ୁଆ ମରଦ ? ସେ ସାଙ୍ଗେ ସାଙ୍ଗେ ହୁଙ୍କାରଟେ ଗୁଡ଼ି ଦେଇ ଉପରକୁ କୁଦି ପଡ଼ିଲା । ତାପରେ ତାପରେ ହୋଇ ସମସ୍ତେ ଯେ ଯାହା ତାକତ ଖଟେଇ ଉପରକୁ ଉପରକୁ ଲମ୍ଫ ମାରିଲେ । ଶେଷରେ ମହାବୀର ହନୁମାନ ସମଗ୍ର ମାଙ୍କଡ଼ବାହିନୀର ଏତାଦୃଶ୍ୟ ଅଯଥା ବାହାଦୁରୀକୁ ବରଦାସ୍ତ କରି ନ ପାରି ମହାମାନରେ, ମହାତାନ ଦେଇ ପବନ ପ୍ରମାଣେ ମେଘକୁ ଟପିଯାଇ ଉପରକୁ ଉଠିବାକୁ ଲାଗିଲା । ପତରରେ ବଢ଼ା ହୋଇ ଥିବା ଫଳ ଫୁଲୁରି ସବୁ ଏ ଉଦ୍ଧଣ୍ଡ ଧୁମାକୁସ୍ତିରେ ଧୂଳି ହୋଇଗଲା ।

ଗପଟାକୁ ପଢ଼ିସାରି ମାଙ୍କଡ଼ ଗୁଡାକର ମାଙ୍କଡ଼ାମି ପାଇଁ ହସ ମାଡ଼ିଲା । ହଠାତ୍ ଦାଣ୍ଡରେ ପାଟି ଶୁଭିଲା । ମୁଁ ଦାଣ୍ଡକୁ ବାହାରି ପଡ଼ିଲି । ଗାଁ ମଝିରେ ପାଇକରାଙ୍କ ଉଆସ କଡରେ ଲୋକ ମେଞ୍ଚେ ଗଦା ହୋଇଛନ୍ତି । ବେଦମ୍ ପାଟି ଭୁଣ୍ଡି ହେଉଛି । ସେଠି ପହଞ୍ଚି କଣ କଣ ବୁଝି ବୁଝି ଜାଣିଲି ଯେ ଆମ ଗାଁ ମୁଣ୍ଡି ଆଳ ଭଜହରି ପାଇକରା ବଡ଼ବାବୁ କୁସୁନି ସାହୁ ଉପରେ କମ୍ପମାନ ହେଉଛନ୍ତି । କୁସୁନି ସାହୁ ଭାଗ ବଖରା କରି, ଚାଷ କାମରୁ ଫୁରୁସତ ପାଇଲେ କେତେବେଳେ କେମିତି ଠୁକୁର ଠାକର ବେପାର ବଣିଜ ଚଳେଇ, ଏଣୁ ତେଣୁ ଫନ୍ଦି ଫିକର କରି ପେଟରୁ କାଟି ଦି ପଇସା

ସଞ୍ଚିକ ରଖିଥିଲି । ଏସନ ଇଟା କଟୁଛି ପକାଇ କାନ୍ଥ ଉଠାଉଛି । ବଖରେ ଅନ୍ତତଃ ଘର ଠିଆ କରିଦେବ । କୁଡ଼ିଆ ବକଟକରେ ଛୁଆ ପିଲା ଧରି ଗେଞ୍ଜି ମେଞ୍ଜି ହୋଇ ଦହଗଞ୍ଜରେ ଚଳୁଛି । କୁସୁନ ସାହୁର ଡିହ ଖଣ୍ଡିକ ପାଇକରାଙ୍କ ଉଆସକୁ ଲାଗିକି ରହିଛି । କୁସୁନ ସାହୁର ବାପା ଟେମେଇ ସାହୁ ପାଇକରାଙ୍କ ରଇତ ହୋଇ ଡିହ ଗୁଣ୍ଠିକ ପାଇକରାଙ୍କଠୁଁ ହାତପଟା କରି ନେଇଥିଲା । ପାଇକରା ଗର୍ଜୁଛନ୍ତି—

ଉଆସରେ ବେଠି ବେଗାରି କରି କରି, ଅଇଁଠା ପତର ଗୃଟି ଗୃଟି ଟେମାର ଧଡ଼ ଛୁଡ଼ ଯାଇଛି । ଉଆସ ସାଆନ୍ତମାନଙ୍କ ସେବା କରିବା ପାଇଁ ଟେମେଇ ସାହୁର ଉଆସ ପାଖରେ ଥଇଥାନ କରା ହୋଇଥିଲା । ଟେମା ପୁଅ କୁସୁନିଆଁ ସେ ପୁଣି ଗୋଟେ ମଣିଷ ହେଲାଣି ଗୋଲାମ ଟୋକା କୁସୁନିଆର ବଷ୍ଟର ଅଣ୍ଡା ଖଣ୍ଡିକ । ସେ ପୁଣି ପାଇକରା ନାତିକୁ ବହପ ଦେଖାଇ ଟିଟିକାରି ମାରିବ, କହେ ତାଙ୍କର କି ଉଆସ ଉଠୁଛି । ଯ୍ୟାପ, ଚାଙ୍ଗୁଡ଼ି ଚପିଲେ ମୁଣ୍ଡରେ ବସ । ଦେଉଛି, ନେଉଛି, ଉପୁରି ଭଙ୍ଗି ଦେଉଛି । ଯ୍ୟାପ. ପାଳ ବାଇଗଣ, କାଠି ମାରି ଦେଲେ ପାଣି ବୋହିଯିବ । ପାଇକରା ପରି ଚୌପାଢ଼ିଆ ସାଙ୍ଗରେ ଗୋଲାମ ଟୋକା ଟକ୍କର ମାରିବ ?

ପାଇକରା ଗୃଷ ବେଉଷଣ ବନ୍ଦ କରି ଦେଇ ସବୁ ମୂଲିଆଙ୍କୁ ଲଗାଇ କୁସୁନ ସାହୁର ଠିକ କାନ୍ଥ କଡ଼କୁ ଦଶ ଫୁଟ ଗହୀରରେ ଗୋଟାଏ ନାଳ ଖୋଳୁଛନ୍ତି । ଦେଖାଯାଉ, କେମିତି କୁସୁନିଆର ଉଆସ ଉଠୁଛି ?

ମୁଁ ଝୁଲିଲା ଝୁଲିଲା ହୋଇ ଡାଁ ମୁଣ୍ଡ ଅଡ଼କୁ ଆଗେଇଲି । ଠିକ୍ ଦୋକାନ ସାମନାରେ ସୁତନୁକୁ ଧାବୁଡ଼ିଗଲି । ରବିବାରିଆ ଫୁରୁସତ ପାଇ ତା ଭିତରେ ଜମିଥିବା ସାହିତ୍ୟ ବଜାରର ପ୍ରକାଶ୍ୟ ଅପ୍ରକାଶ୍ୟ ଖବର ସବୁକୁ ଖଲାସ କରିବାକୁ ସେ ପ୍ରାୟ ମୋ ପାଖକୁ ଆସେ । ସୁତନୁର ଅନେକଟା ସାହିତ୍ୟିକ ହିସାବରେ ଖ୍ୟାତି ରହିଛି । ମୁଁ ଦୁ' କପ୍ ଚା ବରାଦ କରିଦେଲି । ଚା ଦୋକାନରେ ହାଲ-ହାଲ-ଗୋଡ଼ ଘୋଡ଼ିଆ ଉପରେ ବସିପଡ଼ି ଘୋଡିଆ ଗୋଡ଼କୁ ସିଧା ରଖିବାକୁ ସୁତନୁକୁ ହୁସିଆରରେ ବସାଇ ଦେଲି । ହୁଗୁଳା

ଘୋଡ଼ଆ ଗୋଡ଼କୁ କାବୁ କରିବାର କାଇଦାଟା ମୁଁ ଅଭ୍ୟାସ କରି ନେଇ ଥିଲି । ସାହିତ୍ୟ ଦପ୍ତରରେ ସୁତନୁକୁ ବାଧିଲି ଭଳି ତଟକା ଘଟଣାଟେ ଘଟି ଯାଇଥିଲି । ସେ ଉଦାସ ଦିଶୁଥିଲି ।

ସୁତନୁ ରହି ରହି ଆରମ୍ଭ କଲା । ଗୋଡ଼ ଟଣାଟଣି, ପଛେ ଚମୁଟା, କୁକୁର ଭୁଉକି ଶ୍ରେଣୀୟ ନାସନା କାରବାର ଗୃହକଣି, ଦୋକାନଦାଣି ଜମି-ବାଡ଼ ଛଡ଼ାଛଡ଼ ଇମିତି ଇମିତି ଟେହକା କଆଣିମାନଙ୍କରେ ବିଧିର୍ମ ଖବରର ଶୁଣିଲେ ବୋଲି ସେ ବହୁତ କଛି ଶୁଣିଥିଲା ଓ ଅଳ୍ପେ ସଳ୍ପେ ଅଙ୍ଗେ ନିଭାଇ ଥିଲା । ସାହିତ୍ୟର ଆମ୍ବଗଛ ଗୁଇରେ ମାଲକୁସ୍ତିର ଯେ ମାଟି ମନ୍ଥନ ହୁଏ,ଏ ସତ୍ୟଟାକୁ ସେ ନଗଦା ଆମଦାଣି କରିଛି । ଏଥର 'ବହ୍ନିଶିଖା' ପତ୍ରିକାରେ ଆମର ଶିରପାବାଲି ସାହିତ୍ୟ-ସିଂହ ଚନ୍ଦ୍ରଚୁଡ଼ ଚୌପଞ୍ଚନାୟକ ସୁତନୁ ଉପରେ ଭରି ତାନମାନ ଦେଖାଇ ଲଙ୍ଗୁଳ କରୁଛନ୍ତି । ଚୌପଞ୍ଚନାୟକ ତାଙ୍କ କରିତ୍କର୍ମା ଶୁମଚ ରେକମେଣ୍ଟ ଜରିଆରେ ଧମକ ପଠାଇଛନ୍ତି ଯେ ତାଙ୍କର ଜ୍ଞାନପୀଠ ପୁରସ୍କାର ପାଇଁ ଲେଖୁଥିବା ଉଦ୍ଭଟ ଉପନ୍ୟାସକୁ ବିଶ୍ରାମ ଦେଇ, ଦରକାର ପଡ଼ିଲେ ସମ୍ପୂର୍ଣ୍ଣ ବିନାଶ କରି ତାଙ୍କର ଶକ୍ତିଶାଳୀ ସମସ୍ତ ସାହିତ୍ୟିକତାକୁ ସୁତନୁକୁ ସାହିତ୍ୟ-ତମ୍ବୁ ତଳୁ ନିକାଲି ଦେବାକୁ ନିଷ୍ଟୟ ଖର୍ଚ୍ଚ କରିବେ । ଚୌପଞ୍ଚନାୟକ କସମ୍ ଖାଇଛନ୍ତି, ସୁତନୁକୁ ସାହିତ୍ୟ ଫୁଲକା ଉପରେ ଚିତ୍ ନକଲା ଯାଏଁ ସେ ଦାଢ଼ୀ କାଟିବେନି । ସୁତନୁର ଅପରାଧ ହେଉଛି, 'ବହ୍ନିଶିଖା'ର ଆର ମାସ ସଂଖ୍ୟାରେ ପ୍ରକାଶିତ "ଯାଁବାଳୁଆ" ଗପଟା ଚୌପଞ୍ଚନାୟକଙ୍କ ବାହାରି ଥିବା 'ପ୍ରଜାପତି' ଗପକୁ ଚୁଟୁକି ମାରି ଉଡ଼େଇ ଦେଇଛି ବୋଲି ଦଳେ ଠୋକାଠାକଳଆ ସାହିତ୍ୟ-ବାଲି କାନେଳ ଚୌପଞ୍ଚନାୟକଙ୍କୁ ଚିଟିକାଣି ମାରିଲେ ।

ସୁତନୁକୁ ଏଣୁ ତେଣୁ ବିପଦ ବୋଧସୋଧ ଦେଇ ବିଦା କରିଦେଲି । ବି ପାହୁଣ୍ଡ ଘର ଆଡ଼କୁ ମୁହାଁଇଛି କି ନାହିଁ ପଛଆଡୁ ବାମ୍ପ ଉଠୁଥିବା ଚଡ଼ା ସ୍ୱରରେ ପାଟି ମୁଣ୍ଡ କାନରେ ପଡ଼ିଲା । କଲେଜ ଗଡ଼ମାଟିର ଟାଣୁଆ ଟାଣୁଆ ପଲଟନ ବିପୁଞ୍ଜା ହେବ କଣ ଗୋଟିଏ ଘଟଣାକୁ ପିଞ୍ଜି ପିଞ୍ଜି ହସ, ପାଟି, ଫୁଟାଣିର ଭୁଳା ଉଡ଼ାଉ ଉଡ଼ାଉ ମାରଣା ଷେଣ୍ଢ ଭଳି ଆଗକୁ ଆଗକୁ ମାଡି ଆସୁଥିଲେ । ମୁଁ ଗୁନିଆରେ ରାସ୍ତା କଡ଼କୁ ଆଡ଼େଇ ଗଲି ।

ଗୋଟାକ ପରେ ଗୋଟାଏ ଆବୁରୁ ପଡ଼ି ଆପଣା ଆପଣା ବାହାଦୁରୀ ବଖାଣିବାରେ ସମସ୍ତେ ବ୍ୟସ୍ତ ଥିଲେ । କହିବାର ହାଉଆ ଏତେ ଜୋରରେ ପିଠୁଥିଲା ଯେ ଶୁଣିବା ପାଇଁ ଗିରି ଗଳାବାଟରେ କଥା ଗୁଡ଼ାକ ନ ଗଳି ବାହାରେ କେବଳ ବାଏଁ ବାଏଁ ଉଡ଼ି ଯାଉଥିଲା । କଏ ତା ଓସ୍ତାଦି ହାତର କସରତ୍ତି କେମିତିକା କହୁଁ କହୁଁ ଗୁଟିବାର ମୁଦ୍ରା ଦେଖାଇ ଆଗକୁ କୁଦିପଡ଼ି ବକ୍ତୃତା ପେଲି ଦେଲା ଯେ ତା ଗୁଟିବା ପରା ଅଣ୍ଡାଟା ପଣ୍ଡା ଟୋକାର ନାକଦଣ୍ଡିରେ ଠିକ୍ ଯାଇ ଠାଏଁକନା ଠୁକିଗଲା । ପଛରୁ ଆଉଜଣେ ତାକୁ ଠେଲି ଦେଇ ଆଗରେ ଆସ୍ଥାନ ଜମାଇ ସମସ୍ତଙ୍କୁ ଶୁଣିବାକୁ ବାଧ୍ୟ କଲା ଯେ ତା ହାତବନ୍ଧା ଫଟକାଗୁଡ଼ାକ ଲଗ ଲଗ ଫୁଟିବାରୁ ବୋମା ଚଉଲା ବୋଲି ଚଡ଼ାଚଡ଼ି, ଗଡ଼ାଗଡ଼ି, ପଡ଼ାପଡ଼ି ହୋଇ ଲୋକଗୁଡ଼ାକ ବାଇବନ୍ଧୁ ହୋଇ ଯେଉଁ ଅତର୍କିଆ ଦାଣ୍ଡିଆ ମାଇଲେ ନା, ଦେଖି ଦେଖି ହସୁ ହସୁ ତା ହୋସ୍ ବୁଡ଼ି ଯାଇଥାନ୍ତା ।

ସେମାନଙ୍କ ଆଲୋଚନାକୁ ଘଣ୍ଟାଚକଟା କରି ଘଟଣାର କଚ୍ଛୁଟା ନର୍ଯାସ ପାଇଲି । ପଶୁଗ୍ରାମ ପଣ୍ଡା କେଉଁ ସଭାରେ ଭାଷଣ ଦେଉଥିଲା । ଠୁଣୁକା ପିଲାଟେ ହେଲେ କଣ ହେବ, ଟୋକାଟାର ନାକଦଣ୍ଡିରେ ବୁଦ୍ଧି ଭର୍ତ୍ତି ହୋଇଛି । ଅନ୍ୟତ୍ର ଭୁଲଭଟକା ଦେଖିଲେ କଥାଗୁଡ଼ାକୁ ପଜେଇ ପଜେଇ ଗବ୍‌ଗାବ୍ ହାବରେ ଗଳାଇ ଦିଏ । ପଞ୍ଚାୟତ ସମିତି ଚେୟାର-ମେନଙ୍କ ଗାଈ ପଣ୍ଡା ବାଡ଼ିର ଫୁଲଗଛ ଖାଇଗଲା ବୋଲି ଚେୟାରମେନଙ୍କ ଘରର ଟୋକାକୁ ପଣ୍ଡାଙ୍କ ଘରଣୀ କଣ ଦପଦପ କର୍ଣ୍ଣ କଡ଼ା ଶୁଣେଇ ଦେଇ ଶିଙ୍ଗାର ଦେଇଛି । ଚେୟାରମେନ୍ ସାହେବ ପଣ୍ଡାର ସଭାକୁ ଫୁରୁସେଇ ଦେବାଲାଗି ଏ ଗୁଣ୍ଡୁର ମୁଷ୍ଟିକ ମହାମଲ୍ଲମାନଙ୍କୁ ପଠାଇବା ହୋଇଥିଲେ । ପଣ୍ଡା ପୁଅକୁ ଏଣିକି ସଭା ସମିତିରେ ବେଶି ଡାକରା ପଡ଼ୁଛି । ଚେୟାରମେନ୍ ସାହେବଙ୍କ ବକ୍ତୃତା ବଜାର ମାନ୍ଦା ମାନ୍ଦା ଧରି ଧରି ବିଲକୁଲ୍ ତଳି ଧରିଯିବାକୁ ବସିଲାଣି । ପଣ୍ଡା ଟୋକାକୁ ଯେମିତି ହେଉ ମାଡ଼ିବସି ସମାଧି ଦେବାକୁ ହେବ । ପାରୁପଣେ ତା ପିଠି ଧରି ବଜ୍ର, ଉର୍ବଶୀ ଯେଉଁ ହତିଆରରେ ହେଉ ତା ତପସ୍ୟାକୁ ଅଲ୍‌ବଟ୍ ଭଣ୍ଡୁର କରିବାକୁ ପଡ଼ିବ । ପଣ୍ଡା ପୁଅର ଥଣ୍ଡା ଥଣ୍ଡା ବାଟୁଲି ମାଡ଼ ଚେୟାରମେନଙ୍କ ଇନ୍ଦ୍ରପଦକୁ ଟଳମଳ କରିବାକୁ ବସିଲାଣି ବୋଲି ସେ ଶୁଙ୍ଗୁରି ପାଇଛନ୍ତି ।

ଯାହାହେଉ ଘରେ ଆସି ପହଞ୍ଚି ଗଲି । ଘର ଭିତରେ ପାନ୍ଥ ବାଗୁଡ଼ିର ବାହା ସାଙ୍ଗକୁ ଗୁଳଚୁଆଁ ର ଗଡ଼ାପଡ଼ା ଚାଲିଛି । ମୋ ସାନ ଝିଅର ମାଛ ଖଣ୍ଡିକ ଚୋରି ହୋଇଗଲା ବୋଲି ସେ ରାଗରେ ଗରଗର ହୋଇ ତା ଛାତିଆକୁ ଛାଟି ଦେଲା । ତା ଛାତିଆ ଯାଇଁ ତା ଉପରଓଠର ଗାଲରେ ପିଟି ହୋଇଗଲା ଯେ ତା ପାଟିରୁ ତା ବଡ଼ ମାଛ ଖଣ୍ଡଟା ଗଳି ପଡ଼ିଲା । ତା'ପରେ ଉତ୍ତେଜନା ପଛକୁ ଉତ୍ତେଜନା ଗୋଛେଇ ହୋଇ ପଡ଼ିଲା । ଯୁଦ୍ଧଂଦେହିର ରେଟରେକାର ରଡ଼ିରେ ଘରଦ୍ୱାର ଉଠପଡ଼ ହେଲା । ଥାଳୀ, ଗିନା, ଖଡ଼ିକା, ଚଟୁ, ପହଁରା; ଗୁଞ୍ଜୁଣି ଇତ୍ୟାଦି ଅସ୍ତ୍ର ପ୍ରତ୍ୟସ୍ତ୍ରର ଘନଘନ ଘମାଘୋଟ ଲଢ଼େଇ ଫଳରେ ଯୋଦ୍ଧୃବୃନ୍ଦ ଯାହା ତ ଖଣ୍ଡିଆ ଖାବରା ହେଲେ, ହେଲେ ବଚରା କାଚଗ୍ଲାସ, କପ୍ ପ୍ଲେଟ ଶ୍ରେଣୀୟ ସେବାକାରୀ ନିରୀହ ଅନ୍ତେବାସୀ ପ୍ରଜାଗଣ ଅକାରଣରେ ଅତ୍ୟାଚରିତ ହୋଇ ମରିକି ଶୋଇଲେ । ସହସା ଦେବ ସେବାରତା କନ୍ୟାଙ୍କ ଜନନୀ ଠାକୁରଙ୍କୁ ଲୁଗା ପିନ୍ଧାଉ ପିନ୍ଧାଉ ଅଧା ଲଙ୍ଗଳା କରି ଛାଡ଼ି ଦେଇ ବିଦ୍ରୋହ ଦମନ ପାଇଁ ନିଜେ ଅସମ୍ଭାଳ ହୋଇ ପଦାକୁ କୁଦି ପଡ଼ିଲେ । ଅସ୍ତ୍ର ଅଣ୍ଟାଳୁ ଅଣ୍ଟାଳୁ ଦୈବାତ୍ ଚୁଲି ଉଖୁରିଆଟା ତାଙ୍କର ହସ୍ତଗତ ହେଲା । 'ଆଖି କାନର ଦୋଷ ନାହିଁ' ସେତେବେଳେ ଉନ୍ମତ୍ତ ହୋଇ ଦେବୀ ଚିତ୍ରାଙ୍ଗଦା ଉଖୁରିଆ ବୁଲାଇ ବୁଲାଇ କାନ୍ଥବାଡ଼, କାଠ ଖୁଣ୍ଟ, ବିଲେଇ କୁକୁର ଯାହାକୁ ପାଇଲେ ଅନାଧୁନିଆ ବାଡ଼େଇ ଚାଲିଲେ । ଝିଅମାନେ ବାଙ୍କିଣିଆଳ ଦେଇ ମା'ଙ୍କୁ ଚକ୍କର ଖୋଉଁ ଖୋଉଁ ମାତା ମହାବୀର ମହାଦର୍ପରେ ଘିଅହାଣ୍ଡିକୁ ପିଟି ଚୂରମାର କରିଦେଲେ ।

ଯୁଦ୍ଧ ଜୋର୍‌ରୁ ନିଜକୁ ବଞ୍ଚାଇବା ଲାଗି ମୁଁ ଗଳାବାଟ ଦେଇ ଗଳି ବାରିଆଡ଼କୁ ପଳାଇ ଗଲି । ଘରେ ବାହାରେ ସବୁଠି ବାବା ଅଙ୍ଗୁରନାଟ ସବୁଠି ମାଙ୍କଡ଼ାମି ସୁଆଙ୍ଗର ପଖଜ ପିଟା ଚାଲିଛି । ଏ ଋଞ୍ଜାଳିଆ ବେଳ ତାଭିରୁ ଟିକଏ ଶାନ୍ତି ପାଇବା ପାଇଁ ବାରି ପଣସ ଗଛମୂଳ ପିଣ୍ଡି ଉପରେ ଘଡ଼ିଏ ବସି ପଡ଼ିଲି । ଚାରିଆଡ଼ୁ ହାମୁଡ଼େଇ ଆସୁଥିବା ନିଆଁ ଝୋଲକୁ ହୁରୁଡ଼େଇବା ଲାଗି ମୁଁ ଖଣ୍ଡେ ପଣସ ଡାଳ ଘେନି ଜଲଦି ଜଲଦି ବିଞ୍ଚି ହେବାକୁ ଆରମ୍ଭ କରିଦେଲି ।

# ବର୍ମା ନୋଟ

ସାନ ଝିଅ ଦୌଡ଼ି ଆସି କହିଲା—ବାପା, ଓ୍ୱେଷ୍ଟପେପର ବାସ୍କେଟ ସଫା କରି ଅଳିଆ କାଗଜ ବାହାରକୁ ଫିଙ୍ଗିଦେବାକୁ ବସିଥିଲି । ତା ଭିତରୁ ତୁମର ମେଟ୍ରିକୁଲେସନଠାରୁ ଡ଼ିଗ୍ରୀଯାଏଁ ସବୁ ସାର୍ଟିଫିକେଟ, କେତେଟା ମାନପତ୍ର ପାଇଲି । ତୁମେ ବୋଧହୁଏ ଭୁଲରେ ଫୋପାଡ଼ି ଦେଇଛ ।

ଚନ୍ଦ୍ରଚୂଡ଼ ତ୍ରିଭୁବନ ଝିଅ ଆଡ଼କୁ ଆଖି ନ ଉଠାଇ କହିଲେ—ହଁ, ସେଗୁଡ଼ାକ ଖତଗଦାକୁ ଫୋପାଡ଼ି ଦେ ।

ବାପାଙ୍କ ଆଡ଼କୁ ପୁଣି ପଚାରିବା ପଚାରିବା ଆଖିରେ କିଛି ସମୟ ଚାହିଁ କିଛି ନ କହି ଝିଅ ଚାଲିଗଲା ଓ ମାଆ ପାଖରେ କଣ ଫୁସଫାସ କରି କହିଲା ।

ହଁ, ଚନ୍ଦ୍ରଚୂଡ଼ ତ୍ରିଭୁବନ ନିଜର ସ୍କୁଲ କଲେଜର ଅମକେଇ ତମକେଇ ପାସ୍ କରିଥିବା ପ୍ରମାଣପତ୍ର ଆଉ କାହିଁ କାହିଁ ପାଇଥିବା କେତେଖଣ୍ଡ ମାନପତ୍ରକୁ ଅଳିଆ ପାଚ୍ଛିଆ ଭିତରକୁ ଫିଙ୍ଗି ଦେଇଥିଲେ । ସେହି କାଗଜମାନଙ୍କ ଉପରେ ଯେଉଁ ମର୍ଯ୍ୟାଦାର ପଦଚିହ୍ନ ସବୁ ଛପା ହୋଇଥିଲା, ସେଗୁଡ଼ିକ ତାଙ୍କ ପାଇଁ ମୂଲ୍ୟହୀନ ହୋଇ ପଡ଼ିଥିଲା । ଉପାଧି ପ୍ରଶଂସାର କାଛକୁ ନିଜଠୁଁ ଖସେଇ ଦେଇ ସେ ଖୁବ୍ ହାଲକା ଅନୁଭବ କରୁଥିଲେ ।

ତାଙ୍କର ପିଲାଦିନ କଥା ମନେ ପଡ଼ିଲା । ସେ ଜେଜେବାପାଙ୍କ ସାଙ୍ଗରେ ଥରେ ହାଟକୁ ଯାଇଥିଲେ । ଗୋଟେ ଜାଗାରେ ଭିଡ଼ ଜମିଥାଏ । କଣନା, ନୋଟ ବିକ୍ରି ହେଉଛି । ଜେଜେବାପା ଦିଖଣ୍ଡ ଶହେଟଙ୍କିଆ ନୋଟ କିଣି ଆଣି ତାଙ୍କୁ ଦେଇଥିଲେ । ତାଙ୍କର ଠିକ୍ ମନେ ନାହିଁ । ଖଣ୍ଡ ଅଧଲେ କି ପଇସେ, ଏଇମିତି କଣ ଥିଲା । ଜେଜେବାପା କହିଥିଲେ, ଏଗୁଡ଼ାକ

ବର୍ମାନୋଟ । ବର୍ମାର କେଉଁ ଅବସ୍ଥା ପାଇଁ ନୋଟସବୁ ଅଚଳ ହୋଇଥିଲା, ସେତେବେଳେ ସେ ଜାଣିବାକୁ ଇଚ୍ଛୁକ ନଥିଲେ । ପରେ ସେ ସମ୍ପର୍କରେ କିଛି ଭାବିନଥିଲେ । କେବଳ ସେତେବେଳେ ପକେଟରେ ଦୁଇଶହ ଟଙ୍କାର ନୋଟ ପୁରାଇ ଗାଆଁ ପିଲାଙ୍କ ଆଗରେ ଫୁଟାଣି ଦେଖାଇବା ହିଁ ତାଙ୍କ ପାଇଁ ଦୁଇଟିର ଏକମାତ୍ର ଆବଶ୍ୟକତା ଥିଲା ।

ଗୀତାର କର୍ମଯୋଗକୁ ସେ ବିଶ୍ୱାସ କରୁନଥିଲେ । ଫଳପ୍ରାପ୍ତିର ଚିନ୍ତାକୁ ମନରୁ ମୂଳପୋଛି କରିଦେଇ କର୍ମ ଯେ କେମିତି କରିବାକୁ ହୁଏ, ସେ ବୁଝି ପାରନ୍ତିନ । ଗୀତାନିଷ୍ଠ ମୁନିଋଷିମାନେ ଯେଉଁ ନିଷ୍କାମ ତପସ୍ୟା କରୁଥିଲେ ସେମାନଙ୍କର ସେ ସାଧନାର ଅନ୍ତସ୍ୱରରେ ଅନ୍ତତଃ, ମୋକ୍ଷର କାମନା ତ ଥିଲା । ଆଉ 'ମନ୍ଦକବି ଯଶୋପ୍ରାର୍ଥୀ', 'ପ୍ରତିଷ୍ଠା ଶୂକରି ବିଷ୍ଠା' 'ଗୌରବଂ ରୌରବଂ ସମଂ' ଇତ୍ୟାଦି ଇତ୍ୟାଦି ଯେଉଁମାନେ ବ୍ୟାଖ୍ୟାନ କରିଯାଇଛନ୍ତି, ସେମାନେ ଏତାଦୃଶ୍ୟ ଉକ୍ତି ମାଧ୍ୟମରେ ପ୍ରତିଷ୍ଠା, ଯଶ, ଗୌରବର ପ୍ରୟାସ କରିଥିଲେ । ଯେଉଁମାନେ କୃତୀର ସ୍ୱୀକୃତିକୁ ବାଦ୍‌ଦେଇ କମ୍ କରାଯାଇ ପାରେ ବୋଲି ଧ୍ୱନି ଦିଅନ୍ତି, ସେମାନେ ନିଜ ପାଖରେ ନିଜକୁ ଲଙ୍ଗଳା କରି କେବେ ଦେଖିବାକୁ ଇଚ୍ଛା କରି ନାହାନ୍ତି ବୋଧହୁଏ । କିମ୍ବା ନିଜକୁ ଦେଖିସାରି ଦେଖେଇ ହେବା ପାଇଁ ମେକ୍‌ସିମ୍‌ର ସନ୍‌ଗ୍ଲାସ୍ ପିନ୍ଧି ସେମିତି କିଛି ଦେଖିବାର ନାହିଁ ବୋଲି ସ୍ଲୋଗାନ ଦିଅନ୍ତି ।

ଚନ୍ଦ୍ରଚୂଡ଼ ପ୍ରହରାଜ ତାଙ୍କର ଉପାଧି, ପ୍ରଶଂସା, ପୁରସ୍କାରର ସବୁ ସନ୍ତକକୁ ଅଳିଆ ବୋଲି ନିଶ୍ଚିତ ହୋଇ ଅଳିଆ ପାତ୍ରିଆକୁ ଫିଙ୍ଗି ଦେଇଥିଲେ । ଫୁଲ କହିଲେ, ଯେତେବେଳେ ପ୍ଲାଷ୍ଟିକ୍ ଫୁଲ ଫୁଲର ସମ୍ମାନ ନେଇ ସମ୍ମାନିତ ହେଉଛି, ବର୍ଜିତ ପ୍ରକୃତିର ଫୁଲକୁ ଅବାଞ୍ଛିତ ବୋଲି ଫିଙ୍ଗି ଦେବାରେ ଯଥାର୍ଥତା ରହିଛି ବୋଲି ସେ ଅନୁଭବ କରିଥିଲେ ।

ଡ଼ିଗ୍ରୀ, ସାର୍ଟିଫିକେଟ ? ପରୀକ୍ଷାର ଯଥେଷ୍ଟ ଆଗରୁ ପ୍ରଶ୍ନପତ୍ର ପାନ ଦୋକାନରେ ମଦନାନନ୍ଦ ମୋଦକ ଭଳି ବିକ୍ରି ହେଉଛି । ପରୀକ୍ଷା ହଲରେ ପରୀକ୍ଷାର୍ଥୀ ଟେବୁଲ ଉପରେ ଟଙ୍କାବିଡ଼ା ରଖିଦେଇ କ୍ଲାସ୍ ପୋଜିସନ୍ ଖର୍ଦ୍ଦି କରୁଛି । ପରୀକ୍ଷା ହଲରେ ହାପିଗରେ ଭେଲ୍ୟୁଏସନ ସେଣ୍ଟରରେ ମୂଲଗୁଲ

ଗୁଲଛୁ । ସେଠି ମନମନା ଫସଲ କାଟି ନ ପାରିଲେ ଟେବୁଲେସନ୍‌ରେ ସତରକୁ ସତସ୍ତୋଭର କରାଯାଇ ପାରୁଛି । ଅବଶ୍ୟ ଟେବୁଲେଟରଙ୍କ କୋଠାରେ ଗୁପ୍ତ ପଡ଼ିବା ପାଇଁ ଠିକ୍ ମୋଟା ଅଙ୍କର ଲଫାପା ତାଙ୍କ ଟେବୁଲ ଉପରେ ଥୁଆ ହେଉଥିବ । ଆଉ ସେ ଶ୍ରେଣୀର କରିତ୍କର୍ମାମାନେ ସବୁ ଜାଗାରେ କୃଷ୍ଣର ସ୍ୱୀକୃତି ଧରି କୃଷ୍ଣ ସନ୍ତାନ ରୂପେ ବହୁ ବାହାବାହା ଗୋଟାଇ ମହାମାନବର ଅବୟବ ନେଉଛନ୍ତି । ତଥାକଥିତ ଏଷ୍ଟାବ୍ଲିଶ୍‌ମେଣ୍ଟ ତାଙ୍କ ମୁଣ୍ଡରେ ସୁନା କଳସି ଢ଼ାଳୁଛି । ଜନତା ତାଙ୍କର ଜୟ ଜୟକାର କରୁଛି । ଯତ୍ନ କରି ରତ୍ନ ପାଇବାର ପଦ୍ଧତିରେ 'ଯତ୍ନ' ଶବ୍ଦର ପୁରୁଣା ବ୍ୟାଖ୍ୟା ଅକାମୀ ହେଇ ପଡ଼ୁଛି । ନୂଆକୁ ପୁରୁଣା ବାଟ ଛାଡ଼ିବାକୁ ଭଗବାନଙ୍କ କାନୁନରେ ଦୟମାୟ ଭାବରେ ବାଧ । ଚନ୍ଦ୍ରଚୂଡ଼ ପ୍ରହରାଜ ଢ଼ିବ ଆଲୁଅ ଆଗରେ ନଇଁ ନଇଁ ଆଖି ଉପରେ ମନ ଇଚ୍ଛା ଅତ୍ୟାଗ୍ରହ କରିଥିଲେ । ଆଜି ପରିଣତ ବୟସରେ ତାର ପୁରସ୍କାର ଭୋଗ କରୁଛନ୍ତି । ହଁ, ସେ ଅନେକ ଦଣ୍ଡବୈଠକ ମାରିଥିଲେ ଏବଂ ପ୍ରାୟ ସବୁ ଷ୍ଟେଜ୍‌ରେ କ୍ଳାସ୍ ହାସଲ କରିଥିଲେ । କିନ୍ତୁ ଆଜିର ଦାୟାଦ ସ୍କୁଲ କଲେଜ ନାମକ ଏକ ସୌଖୀନ ହୋଟେଲରେ ଡ଼ିସ୍କୋ ନାୟକ ସାଜି ବାପାଙ୍କ ପଇସାରେ ଅନାୟାସରେ କ୍ଳାସ, ପୋଜିସନ୍ କିଣିଆଣି ପାରୁଛି । ବଞ୍ଚିବାର ମାଲିକ ଖୁଆଡ଼ର ଗୋଡ ଶ୍ରମିକ ମଣିଷକୁ ଶ୍ରମର ଅକ୍ଟୋପସ୍ କବଳରୁ ଓଟାରି ଆଣିବାକୁ ବିଜ୍ଞାନ ଆଜି ଉଦ୍ୟମର ଦାଉରେ ଜ୍ଞାନହୀନ ହେଇ ପଡ଼ୁଛି । ଯୁଗଧର୍ମର ଧାର୍ମିକ ନ ହେଲେ ଡ଼ିନୋସାର୍‌ର କଙ୍କାଳ ପରି ମଣିଷ କେବଳ ଯାଦୁଘରର ସାମଗ୍ରୀ ହେଇପଡ଼ିବ ।

ତାଙ୍କର ଗୋଟାଏ ଘଟଣା ମନେ ପଡ଼ିଲା । ଏବେକାର କଥା । ସେ ହଠାତ୍ ଘଟିଥିବା ଘଟଣାର ଠିକଣା ଉପରେ ଜଣେ ଦେଖଣାହାରୀ ହୋଇ ଠିଆ ହୋଇଥିଲେ । ମଞ୍ଚ ଉପରେ ଅନ୍ତତଃ ମୃତ ସୈନିକ ରୋଲଟେ କରିବାକୁ ମନ କରି ସେ ଯାଇଥିଲେ । ଅଭିନୟ କରିବାକୁ ତାଙ୍କ ଭିତରେ ସଉକ ନାମକ ଏକ ଆଲୁଦୋଷ ସବୁବେଳେ ଅଛି । କିନ୍ତୁ ସେଠାକାର ନାୟକ, ଉପନାୟକ, ତା ତଳ, ତା ତଳ, ତା ତଳ ହିନ୍ ଟଣାଳ ପର୍ଯ୍ୟନ୍ତ ଅଭିନେତାମାନଙ୍କର ଅଭୂତପୂର୍ବ କଳାକୌଶଳ ଦେଖି ତାଙ୍କର ଦର୍ଶକ ହେବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଏବେ ଯେଉଁ ବଡ଼ି

ହୋଇଗଲା, ସେ ବଡ଼ି ଚଡ଼ଉ କରିଥିବା ଗୋଟିଏ ଅପନ୍ତରା ଗାଁକୁ ସେ ଆଗେ ଆଗେ ଯାଇଥିଲେ । କିଛି ଚୁଟ୍‌ବୁଟ୍ କାମ ଯଦି କରିପାରନ୍ତି, କିଛିଟା ମାନସିକ ଆତ୍ମପ୍ରସାଦ ପାଇବେ । ଉପାଧି ପଦ ମର୍ଯ୍ୟାଦାବନ୍ତ ଜଣେ ଅତି ଉଚ୍ଚପଦସ୍ଥ ଅଫିସର୍ ରିଲିଫ୍‌ର ଆଡ଼ମ୍ବର ଧରି ପରିଷଦବର୍ଗଙ୍କ ପଛୁଆରରେ ସେବାର ବାନା ବଇରଖି ଯୋଡ଼ି ସେଠି ହଜେ ହୋଇଥିଲେ । ହଠାତ୍ ତାଙ୍କର ଜଣେ ଗୃଣ୍ଣୁରମୁଷ୍ଟିକ ଚେଲା ଗୁପ୍ତ ସନ୍ଦେଶ ଦେଲା ଯେ ଅଫିସର୍‌ଙ୍କ ଉପରେ ଚୌକିର ହାକିମ ତାଙ୍କ କାର୍ଯ୍ୟ ତଦାରଖ କରିବାକୁ ହେଇ ଆସି ପହଞ୍ଚିଲେ । ଅଫିସର୍ ଅଭିନେତା କାହାକୁ ଅପେକ୍ଷା ନ କରି ମେକ୍‌ଅପ୍ ନିଜେ ନିଜେ ନେଇନେଲେ । ଗୁଡକଳସୀରେ ହାତ ପୁରାଇ ନିଜର ପୋଷାକ ଉପରେ ଏଠି ସେଠି କିଛିଟା ଗୁଡର ଛିଟିକା ମାରିଲେ । ତା'ପରେ ଅଟାରୁ ଆଞ୍ଜୁଳେ ଆଣି ମୁଣ୍ଡ, ମୁହଁକୁ ଘଷି ଦେଇ ଅତି ହାଲୁକାରେ ରୁମାଲ ବୁଲାଇ ଆଣିଲେ ପାଉଡ଼ର ଘଷି ମେକ୍‌ଅପ୍‌ର ଶାଳୀନତା ଆଣିବାକୁ ଟିକିଏ ମାମୁଲି ପୋଛାପୋଛିର ଆବଶ୍ୟକତା ପଡ଼େ । ଉପର ଚୌକିର ହାକିମ ରେକରେକାର କରି ମଞ୍ଚ ଉପରକୁ ଉଠିଲେ । ଆଏଁ, ଏ କଣ ଦେଖୁଛନ୍ତି ! ଅଫିସର୍‌ଙ୍କ ପେଣ୍ଟରେ ଗୁଡ, ହାଉଆଇରେ ଗୁଡ଼, ମୁଣ୍ଡରେ ଅଟା, ମୁହଁରେ ଅଟା, କାନ ସନ୍ଧିରେ ଅଟା ଓ ଗୁଡ଼ । ଉପର ହାକିମ କେବଳ ଅଭିଭୂତ ହେଲେ ନାହିଁ, ଅଭିଷ୍ଟ ହୋଇଉଠିଲେ । ନା, ନା, ଏତେ ବଡ଼ ଅଫିସର୍ ଏପରି ଜାଗାରେ । ଏତେ କାମ ଓ ଏତେ ତଳର କାମ ଏପରି ଭବରେ କରି ପାରିବେ ନାହିଁ । ସେ ହେଉଛନ୍ତି ସରକାରଙ୍କ ହାତ୍ତିଶାଳର ସୁରକ୍ଷିତ ଶ୍ୱେତ ହସ୍ତୀ । ଦିନଅରଟି ଆସିଲେ ସେ ବି ତାଙ୍କ ଭଳି ପାଟହାତ୍ତିର ଚୌକିକୁ ଯିବେ । ମହା ହାକିମଙ୍କ ଦରଦଗନ୍ଧ ଅଫିସର ସାହେବ ତାଙ୍କ ଦେହଲଗା ସେବକଙ୍କ ନାକ ଦେଇ ଶୁଙ୍ଘି ନେଲେ । ଆଉ ସେ ଶୁଭଙ୍କର ସହାନୁଭୂତିର ମଞ୍ଜିକୁ ଗଛପତ୍ର, ଫୁଲ କରିବାକୁ ହେଲେ ଉପର ଚୌକିଙ୍କ ମୌସୁମ୍ ଦରକାର । ତାଙ୍କର କୃପା-ବାରି ବର୍ଷା ପାଇଁ ବାୟୁମଣ୍ଡଳକୁ ଅନୁକୂଳ କରିବାକୁ ରିଲିଫ୍ ଦାୟିତ୍ୱଟା କମ ସାହାଯ୍ୟ କରିବନି । ଅନ୍ତତଃ କେତେ ଜଣଙ୍କୁ ସୁପରସିଡ୍ କରି ମହାହାକିମଙ୍କ ଚୌକି ପାଖକୁ ନିଜ ଚୌକିକୁ ଘୁଞ୍ଚାଇବାକୁ ପଡ଼ିବ । ଉପର ଚୌକିଟା ହାତ ପାଆନ୍ତାରେ ଥିବା ଦରକାର ।

ଚନ୍ଦ୍ରଚୂଡ଼ଙ୍କ ଜଣେ ବନ୍ଧୁ ଗୋଟିଏ ଉପାଧିଦାନର ଭିତର ବୃତ୍ତାନ୍ତ କହିଥିଲେ । ବନ୍ଧୁ ଜଣକ ରାଜନୀତି ବ୍ୟବସାୟ କରନ୍ତି । ଠିକଣା, ଟ୍ରାନ୍‌ସଫର୍‌ ଲୋନ୍, ପ୍ରମୋଶନ୍ ଇତ୍ୟାଦି ଇତ୍ୟାଦି ଅବକାରୀ ବିଭାଗ ସମ୍ପର୍କୀୟ ଦଲାଲି ଦାୟିତ୍ୱ ତାଙ୍କ ଦଳ ତରଫରୁ ତାଙ୍କଉପରେ ନ୍ୟସ୍ତ କରାଯାଇଥାଏ । ଦଳର ଫାଇଦା ପ୍ରତି ତାଙ୍କର ଯେତିକି ଆନୁଗତ୍ୟ ତଥା ସତର୍କତା ଥାଏ,ଆପଣାର ସୁବିଧା ପାଇଁ ସେତିକି ସଜାଗତ ଓ ଶ୍ୟେନଦୃଷ୍ଟି ମଧ୍ୟ ରହିଥାଏ । ବନ୍ଧୁ ଜଣକ ଜଣେ କରିତ୍‌କର୍ମାଙ୍କ କାହାଣୀ କହିଥିଲେ । ସେ ମହାମାନ୍ୟ ମହୋଦୟ ଜୀବନର ପଚିଶ ବର୍ଷ ଯାଏଁ ଶୁକୁଟି ସାହୁ ଥିଲେ ଏବଂ ପଚିଶ ପରେ ଆଜି ପର୍ଯ୍ୟନ୍ତ; ଏଇ ପ୍ରାୟ ଦଶବର୍ଷ ହେବ, ପଦ୍ମବିଭୂଷଣ ଶ୍ରୀଯୁକ୍ତ ଶୁକଦେବ ସାମନ୍ତରାୟ ହୋଇ ସମ୍ମାନଜନକ ଜୀବନ ଯାପନ କରୁଛନ୍ତି । ପଦ୍ମବିଭୂଷଣ ଶ୍ରୀଯୁକ୍ତ ସାମନ୍ତରାୟ ଓ ତତ୍‌କାଳୀନ ସ୍ୱାପ ଟାଉଟର ଶୁକୁଟା ଜୀବନର ପ୍ରଥମ, ଦ୍ୱିତୀୟ, ତୃତୀୟ ପର୍ଯ୍ୟାୟ ଯାଏଁ ଦ୍ରୁତିଦାନ କଚେରୀକୁ ଯାଉଥିଲେ ଏବଂ ପ୍ରାୟ ଅଧିକାଂଶ ମିଥ୍ୟା ମକଦ୍ଦମାରେ ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀର ଭୂମିକା ନେଇ ଜୀବିକା ଅର୍ଜନ କରିବା ସଙ୍ଗେ ସଙ୍ଗେ ଜନ-ସେବାରେ ନିଜକୁ ନିଯୁକ୍ତ କରି ପାରିଥିଲେ । ସମ୍ପୂର୍ଣ୍ଣ ଅସତ୍ୟକୁ ଏକ ପୁଣ୍ୟ ସତ୍ୟର ରୂପ ଦେବାକୁ ତାଙ୍କଠାରେ ଯେଉଁ ଅସାଧାରଣ ଧୀମତ୍ତା ଥିଲା, ତାକୁ ଜନସାଧାରଣରେ ବିତରଣ କରି ସେ ବେଶ୍ ଦି'ପଇସା ପାଉଥିଲେ । ଅନ୍ୟକୁ ହଇରାଣ ହରକତରେ ପକାଇବାକୁ ସଦା ପ୍ରସ୍ତୁତ ପ୍ରାର୍ଥୀମାନେ ବହୁ ମୂଲ୍ୟ ଦେଇ ତାଙ୍କଠାରୁ ମନ୍ତ୍ରଣା କିଣୁଥିଲେ ।

ପଇସା ଆସିଲା । ପ୍ରତିପତ୍ତି ଆସିଲା । ଲୋକେ ଆସିଲେ । ଲୋକେ ତାଙ୍କ କଥାରେ ଉଠ୍‌ବସ ହେଲେ । ତା'ପରେ ନେତା ଆସିଲେ, ମନ୍ତ୍ରୀ ଆସିଲେ । ଅତଏବ ତଳଠୁ ଉପର ଯାଏଁ ସରକାରୀ କର୍ମଚାରୀ ତାଙ୍କ ଘରକୁ ଆସିବାକୁ ବାଧ୍ୟ ହେଲେ । ତା'ପରେ ତାଙ୍କ ବୃତ୍ତିର ମୋଡ଼ ବଦଳି ଗଲା । ସେ କଡ ମୋଡ଼ିଲେ ପୃଥିବୀ ଓଲଟିଲା । ସାଧାରଣ ଚାନ୍ଦା ଓ ସରକାରୀ ସାହାଯ୍ୟରେ ସେ ସ୍କୁଲ କଲେ, କଲେଜ କଲେ, ସୁଲଭ ଶୌଚାଳୟ ଉନ୍ମୋଚନ କଲେ, ଶୀତଳ ଭଣ୍ଡାର ଉଦ୍‌ଘାଟନ କଲେ ଓ ଅନେକ ଅନେକ କଲେ ଓ ଢେର ଢେର ତାଙ୍କୁ କରାଇ ଦିଆଗଲା । ମଳୟ ବାଜି ନିମ ଚନ୍ଦନ ହୋଇ ଯାଇଥିଲା । ଶୁକଟି ସାହୁର ଖୋଳପା

ଉତ୍ତର ଦେଇ ଶୁକଦେବ ସାମନ୍ତରାୟ ମୁଣ୍ଡ ଉଠାଇ ସାରିଥିଲେ । ସମଗ୍ର ରାଜ୍ୟର ନିର୍ବାଚନ ଦାୟିତ୍ୱ ଦଳ ତରଫରୁ ନେଇ ଦଳକୁ କ୍ଷମତା ଗାଦିରେ ବସାଇ ସେ ତାଙ୍କ କୃତିତ୍ୱର ଶିଖର ଦେଖି ନିଜତ୍ୱକୁ ସ୍ଥାପନ କଲେ । ଅତଏବ ଶ୍ରୀଯୁକ୍ତ ସାମନ୍ତରାୟଙ୍କ ଜୀବନବ୍ୟାପୀ ଜନସେବା, ଅନନ୍ୟ ବ୍ୟକ୍ତିତ୍ୱ, ଅସାଧାରଣ ତ୍ୟାଗ ପାଇ ତାଙ୍କୁ ପଦ୍ମବିଭୂଷଣ ପଦବୀରେ ମଣ୍ଡିତ କରି ଏଷ୍ଟାବ୍ଲିଶ୍‌ମେଣ୍ଟ ନିଜକୁ ଧନ୍ୟ ମନେ କଲେ । ପଦ୍ମଭୂଷଣ ପଲାଣ ତଳେ ଶୁକୁଟି ସାହୁର ଯାଦୁଆ ପିଠି ସମସ୍ତଙ୍କ ଆଖିରୁ ସମ୍ପୂର୍ଣ୍ଣ ରୂପେ ନିଶ୍ଚିହ୍ନ ହୋଇଗଲା ।

ଚନ୍ଦ୍ରଚୂଡ଼ ପ୍ରହରାଜଙ୍କ ଚିନ୍ତା ବାହାରୁ ଘୂରି ଘୂରି ଆସି ନିଜ ପାଖରେ ଅଟକି ଗଲା । ସେ ଅନ୍ତରର ରୋମନ୍ଥନ କରୁଥିଲେ । ଗିଳି ପକାଇଥିବା କେତେଟା ଗୁଳା ଉପରେ ସେ ଦାନ୍ତ ଦାବିଲେ । ଦିନେ ନୁହେଁ, ମାସେ ନୁହେଁ, ବର୍ଷେ ନୁହେଁ, ପଇଁତିରିଶ ବର୍ଷ । ଜୀବନର ସବୁ ନିର୍ଯ୍ୟାସକୁ ଯୌତୁକ ଦେଇ ସେ ଦଧିମାୟୁ ହବରେ ହାରି ଯାଇଛନ୍ତି । ନିଜ ରୁଚିରେ ରୁଚିବନ୍ତ ହେବାକୁ ସେ ବହୁତ ଦାମ ଦେଇଛନ୍ତି । ଘର ଭାଙ୍ଗି ଯାଇଛି । ସ୍ତ୍ରୀ ବର୍ଷ ବର୍ଷ ଧରି ସୁଦଶାବ୍ରତ ହାତରେ ବାନ୍ଧିଲେ ବି ଦୁର୍ଦ୍ଦଶା ବେକଯାଏଁ ଗିଳି ଦେଇ ଆଗକୁ ଆଁ ବଢାଉଛି । ପିଲାଗୁଡ଼ାକ ଅଜସ୍ର ରଙ୍ଗଗନ୍ଧରେ ସମ୍ଭାବନା ଧରି ଫୁଟିବା ପାଇଁ ଯେତେ କଡ଼ ମୋଡ଼ିଲେ ବି ମରୁଡ଼ି ମାଡ଼ରେ ଡେମ୍ଫ ତାଙ୍କର ଶୁଖି ଶୁଖି ମୋଡ଼ିମାଡ଼ି ହୋଇ ପଡ଼ୁଛି । ନିଜର ଝୁଙ୍କ ପଛରେ ଗୋଡ଼େଇ ଗୋଡ଼େଇ ସମସ୍ତଙ୍କ ପାଖରେ ପାଗଳର ଆଖ୍ୟା ନେଇ ଥଟ୍ଟା ବିଦ୍ରୂପର ସାମଗ୍ରୀ ସାଜିଛନ୍ତି । ପଇଁତିରିଶ ବର୍ଷ ସେ ଗୋଡ଼, ହାତ, ଛାତି, ମୁଣ୍ଡ ପାଣିର ଭଉଁରୀ ଉପରେ ବାଡ଼େଇଛନ୍ତି ସତ, ସେପାରିକୁ ଯାଇ ପାରି ନାହାନ୍ତି । ସୁଅ ସାଙ୍ଗରେ ସଂଘର୍ଷ କରୁ କରୁ ପାଣି ପାରି ହେବାର ଭାନୁମତୀ ପେଡ଼ି ଉଡାନକୁ ଦେଖି ଦେଖି ଛାନିଆ ହୋଇ ନାହାନ୍ତି ସତ, ବେଳେ ବେଳେ ଆତ୍ମଶ୍ଳାଘାର ସ୍ପର୍ଶ ପାଇଛନ୍ତି । ସେ ନିଜର ନିରୀକ୍ଷା କରିଛନ୍ତି । ନିଜ ଭିତରର ଦ୍ୱନ୍ଦ୍ୱର ସମାଧାନ କରିପାରି ନାହାନ୍ତି । ନିଜକୁ ନିଜ ପ୍ରଶ୍ନର ଉତ୍ତର ଦେଇଛନ୍ତି । ନିଜର କିନ୍ତୁ ମନ ମାନି ନାହିଁ । ହୁଏତ ଦଳଗଆଡ଼ିରେ ପହଁରୁଥିବା ଦଣ୍ଡିକିରିର ସାମୁଦ୍ରିକ ମାଛ ସାଙ୍ଗରେ ଟକ୍କର ଦେବା ଏକ ନିଶ୍ଚିତ ବୋକାମି । କିମ୍ବା ପଇଁତିରିଶ ବର୍ଷ ସେ

କେବଳ ଚଷୁ କୁହିଛନ୍ତି । ନ ହେଲେ ବା ଚେଷ୍ଟାଂ କୃତେ ଯଦି ନସିଧ୍ୟତି କୁଦ ଦୋଷଃ । ସବୁ ଉତ୍ତର ନିଜ ପାଖରୁ ଫେରି ଯାଇଛି । ଶେଷରେ ସେ ତାଙ୍କୁ ବୁଝେଇ ଦେଇଛନ୍ତି । ଆଜିର ଜମାନାରେ ସାମନାରୁ ସିଦ୍ଧି ମିଳେ ନାହିଁ, ସିଦ୍ଧି ରୋଜଗାର କରିବା ପଦ୍ଧତି ବଦଳି ଯାଇଛି । ସିଦ୍ଧି ହାସଲ କରାଯାଏ ନାହିଁ । ସିଦ୍ଧି ଦିଆଯାଏ । ଫଳ ବଣ୍ଟୀ ହୁଏ ।

ସେ ତାଙ୍କର ସ୍ମୃତିଚାରଣ କରୁଥିଲେ । ଥରେ ଗୃହଆଡ଼େ ଉଆକା ହୋଇଗଲା ତାଙ୍କୁ ତାଙ୍କର କୃତି ପାଇଁ ପୁରସ୍କାର ମିଳୁଛି । ଘରଣୀଙ୍କ ଶୋତା ଓଠ ଉପରେ କେତେଟା ହସର କୁଞ୍ଚ ଉକୁଟି ଉଠିଲା । ପରେ ଖବର ଆସିଲା କାହାଙ୍କ ବାପ ପୁରସ୍କାର ମୂଲ୍ୟର ଦୁଇଗୁଣ ଅର୍ଥ ସଂସ୍ଥାକୁ ଦେଇ ଅଧାଟା ତାଙ୍କ ପୁଅକୁ ଦେଇଦେବାକୁ ନିର୍ଦ୍ଦେଶ ଦେଇ ସିଦ୍ଧିଲାଭ କଲେ । ଏଇମିତି କେତେ ଥରର କେତେ କସମର କଥା । ଆଉଥରେ ପୁଣି ବିଚାରକମାନେ କାଳେ ତାଙ୍କୁ ପୁରସ୍କାର ଦେବା ପାଇଁ ଜିଦ ଧଇଲେ । କିନ୍ତୁ ସଚୋଚ କର୍ମକର୍ତ୍ତା ତାଙ୍କ ସଂସ୍ଥାକୁ ଭବିଷ୍ୟତରେ ସୁଦୃଷ୍ଟି ଦେବେ ବୋଲି ଯୁକ୍ତି ଦେଖାଇ ଜଣେ ପଦସ୍ଥ ଅଫିସରଙ୍କୁ ପୁରସ୍କାର ଦେବା ବିଧେୟ ବୋଲି ସମସ୍ତଙ୍କର ହୃଦ୍‌ବୋଧ କରାଇ ପାରିଲେ । ଆଉ ଥରକର କାହାଣୀ । ଯେଉଁ ଓସ୍ତାଦ୍‌ମାନେ ପୁରସ୍କାର ଦେବା ଦାୟିତ୍ୱ ନେଇଥିଲେ ସେମାନେ ବାଛି ବାଛି ତାଙ୍କ ଗାଁ ପାଖିଆ ଗୋଟିଏ ଅପରିଚିତ ଅଜାତଶ୍ମଶ୍ରୁ ପିଲାକୁ ଶ୍ରେଷ୍ଠ ପ୍ରତିଯୋଗୀ ବୋଲି ସେମାନଙ୍କର ବହୁ ପରୀକ୍ଷିତ ମତ ଦେଇ ତାକୁ ସର୍ବୋଚ୍ଚ ନମ୍ବର ଦେଇଥିଲେ । ଏପରି ମତକୁ ସାବ୍ୟସ୍ତ କରିବାକୁ ସେମାନେ ସେମାନଙ୍କ ବିଚାରକ ବ୍ୟାଖ୍ୟା ମଧ୍ୟ ଦେବାକୁ ଭୁଲି ନଥିଲେ । ପିଲାଟା ଯଦିଓ ଥରେଅଧେ କାଆଁ ଭାଆଁ ନାଚୁଛି ବା ନନାଚୁଛି ତଥାପି ତା ପାଦର ସାବଲୀଳତା, ତାର ଘୁଙ୍ଗୁର ବାନ୍ଧିବାର କଳାସମ୍ମତ ରୀତି ତା ଶ୍ରମସମ୍ବଳିତ ଘୁଙ୍ଗୁର ଗୁନ୍ଥିବାର ଅଭିରୁଚି ସ୍ପଷ୍ଟ ପ୍ରକାଶ କରୁଛି ଯେ ସେ ଜେଣେ ଶ୍ରେଷ୍ଠ ନର୍ତ୍ତକ । କହିବା ବାହୁଲ୍ୟ ଯେ ଚନ୍ଦ୍ରଚୂଡ଼, ସେ ପ୍ରତିଯୋଗିତା ତାଲିକାର ଶେଷ ଶିଳ୍ପୀରୂପେ ସର୍ବନିମ୍ନ ନମ୍ବର ପାଇ ସୁଦ୍ଧା ଏ ବିଚାର ପ୍ରହସନକୁ ଉପଭୋଗ କରି ହସି ଉଠିଥିଲେ । ଜଣେ ବନ୍ଧୁ ତାପରେ ତାଙ୍କ ପାଖକୁ ଲେଖଥିଲେ—ବ୍ୟସ୍ତ ହେବନି । କୁଷ୍ଠରୋଗୀ ଯେ ଠାଏ ଖଟିଆରେ ଶୋଇଗଲା ପରେ ଜଣେ ସୁସ୍ଥଲୋକ ସେଠି ଶୋଇବା ଠିକ୍ ହୁଏ ନାହିଁ ।

ପୁଣି ମନେ ପଡ଼ିଲା । ଅନ୍ୟ ଏକ ପୁରସ୍କାର ବ୍ୟବସାୟରେ ସେ ତାଙ୍କ ବନ୍ଧୁମାନଙ୍କ ସହୃଦୟତାରୁ ଦଆଲଆ ହୋଇଗଲେ । ତାଙ୍କ ସାଙ୍ଗରେ ପହଁରିବା ଆରମ୍ଭ କରିଥିବା ଓ ଗୃକଗ୍ରି ଅଞ୍ଚଳରେ ଉଚ୍ଚଚୌକି ଦଖଲରେ ଥିବା ଏବଂ ମନପବନ କଠଉରେ ପାଣି ପାର ହେଇ ଶ୍ରେଷ୍ଠ ସନ୍ତରଣକାରୀର ମର୍ଯ୍ୟାଦା ପଦକ ଗ୍ରୁଡରେ ଝୁଲଉଥିବା କେତେଜଣ ବନ୍ଧୁ ତାଙ୍କ ଭିତରିଆ ସାମର୍ଥ୍ୟର କାରବାର କରି ଜଣେ ତାଙ୍କର ଅନୁଗତ ଲୋକକୁ ପୁରସ୍କାର ଦିଆ କରାଇଲେ । ସେ ଲୋକଟି ଯେତେବେଳେ ପୁରସ୍କାର ପାଇଥିଲେ ସେମାନେ ଖୁବ୍ ତାଳି ପିଟିଥିଲେ ଓ ସେ ସମ୍ବର୍ଦ୍ଧନା ଭୋଜି ଉତ୍ସବରେ ଘରୁ କିଛି ଅଟା ଗୃଉଳ ଦେଇଥିଲେ ମଧ୍ୟ ।

ଚନ୍ଦ୍ରଚୂଡ଼ ବ୍ରହ୍ମରାଜ ତାଙ୍କ ଅଖାଡର ପରାଜୟ ପ୍ରହସନର ଇତିହାସ ଖୋଳଇବାକୁ ଆଉ ଇଚ୍ଛା କଲେ ନାହିଁ । ସେ ନିଜର ମଗ୍ନତା ଭିତରୁ ନିଜକୁ ଖସେଇ ଆଣି ଉଠିପଡ଼ିଲେ । ଆଗରେ ଘରଣୀ ଠିଆ ହୋଇଛନ୍ତି । ହାତରେ ତାଙ୍କର ପୋପଡ଼ା ହୋଇଥିବା ସାର୍ଟିଫିକେଟ ଓ ମାନପତ୍ର କେତେଟା ।

ଘରଣୀ କହୁଥିଲେ—ଏଗୁଡ଼ାକ କାହିଁକି ଫିଙ୍ଗି ଦେଉଛ ? ପୁଣି ଝିଅକୁ ଖତଗଦାକୁ ପୋପାଡ଼ ଦେବାକୁ କହିଲ । କଥାଟା କଣ ?

ଚନ୍ଦ୍ରଚୂଡ ବ୍ରହ୍ମରାଜ ତାଙ୍କ ହାତରୁ କାଗଜଗୁଡ଼ାକ ଝିଙ୍କି ଆଣି ଚିକି ଚିକି କରି ଚିରିଦେଇ ନିଜେ ନେଇ ଖତଗଦାରେ ଗୁଞ୍ଜି ଦେଇ ଆସିଲେ । ବାଡ଼ିରୁ ଫେରୁ ଫେରୁ ସେ ମନକୁ ମନ କହି କହି ଆସୁଥିଲେ, ସାର୍ଟିଫିକେଟ, ପଦବୀ, ଉପାଧି,ପ୍ରଶଂସା ପୁରସ୍କାର ସବୁଗୁଡ଼ାକ ବର୍ମାନୋଟ୍ । ମୋ ନାତି ଖେଳିବା ପାଇଁ ମୁଁ ତାକୁ ବଜାରରୁ କିଣି ଆଣି ଦେବି ।



# ନର୍ଦ୍ଦମା ଭିତରର ନୀତିକଥା

ସହରର କଡ଼େ କଡ଼େ ନର୍ଦ୍ଦମାର ନଈ ପେଟେଇ ପେଟେଇ ଚାଲିଛି । ଦୌଡ଼ିବାର ତାକତ ନାହିଁ । ବହି ଯିବାର ଗୌରବ ନାହିଁ । ଗାଇଯିବାର ସୌରଭ ନାହିଁ । କହିଯିବାର ଅଧିକାର ନାହିଁ । ନଈ ହେବାର ସମ୍ମାନ ନାହିଁ । ଅନ୍ୟର ଆବର୍ଜନାକୁ ମୁଣ୍ଡେଇ ମୁଣ୍ଡେଇ ନର୍ଦ୍ଦମାର ନଈ ଠେଲି ପେଲି ଚାଲିଛି ।

ତା କୂଳରେ ଚମ୍ପା, ବଉଳ ଫୁଟେନି । ତାଠିଁ କିନ୍ତୁ ତାଙ୍କର ଫଗୁ ପାଖୁଡ଼ାର ସନ୍ତକ ମିଳେ । ତା ଦେହରେ ରୂପସୀର ନଗ୍ନରୂପ ନାଚି ଉଠେନି । ସୁକେଶୀର ମୁକ୍ତ କେଶ ଭାସି ଉଠେନି । ସେ କିନ୍ତୁ ସେମାନଙ୍କର ସଢ଼ିଗଲା ଚୁଣ୍ଡି, ଛିଡ଼ିଗଲା ଓଠ, ପୋକଧରା ଗାଲ, ଉପୁଡ଼ା କେଶ ସବୁକୁ କୁଣ୍ଢେଇ କୁଣ୍ଢେଇ ଗୁରୁଣ୍ଡି ଗୁରୁଣ୍ଡି ଚାଲିଛି ।

ସହରର ତୁଚ୍ଛ ଘରକୁ ତା ଶାଖା ପ୍ରଶାଖା ନେଇ ଛୁଇଁଛନ୍ତି । ତାଙ୍କ ଘରକୁ ନର୍ଦ୍ଦମାକୁ ନ ଛୁଆଁଇଲେ ସମସ୍ତେ ଯେ ଛୁଆଁସ୍ତା ହୋଇ ରହିଯିବେ । ନିଜର ଆବର୍ଜନାକୁ ନର୍ଦ୍ଦମା ଭିତରେ ନ ଲୁଚେଇଲେ ତାଙ୍କର ଲଙ୍ଗୁଡ଼ିଆ ତାଙ୍କୁ ଘେରିଯିବେ । ତାଙ୍କର ସ୍ୱରୂପ ତାଙ୍କୁ ଅସ୍ପୃଶ୍ୟ କରିଦେବ ।

ସେ ଦେଖିଛି ନଗରର ନବନାଗରୀ ସଦ୍ୟଜାତ ଅବୈଧ ସନ୍ତାନର ତଣ୍ଟି ଦାବି ରାତି ଅଧରେ ତା' ଭିତରକୁ ବିନା ଦ୍ୱିଧାରେ ଫିଙ୍ଗି ଦେଇଛି । ସେ ସାବିତ୍ରୀ ନିଶ୍ଚୟ ପ୍ରଥମ ବାସର ରାତିରେ ବାସରଦୀପର ସ୍ତିମିତ ଦୀପଶିଖାକୁ ଚାହିଁ ସ୍ୱାମୀର ପବିତ୍ର ପାଦ ଛୁଇଁ ନିଜେ ଆଜନ୍ମ କୁମାରୀ ବୋଲି ଶପଥ ନେଇଥିବ । ଆଉ ଅଳ୍ପ ହସ ଓ ଅତି ଆବେଶରେ ଆଲିଙ୍ଗନ ଦେଇ ସ୍ୱାମୀଙ୍କ କାନରେ ଫୁସ ଫୁସ କରି କହିଥିବ ଯେ ସେ କେବଳ ତାଙ୍କ ଭଳି ସତ୍ୟବାନଙ୍କ ପରିତୃପ୍ତି ପାଇଁ ଆଜି ତାର କୁମାରୀତ୍ୱର ପୂର୍ଣ୍ଣାହୁତି ଦେଉଛି ।

ସେ ଜାଣିଛୁ । ସମାଜର ସମ୍ମାନ ଓ ସାଧୁତାର ମଣିଷ ବାରବଧୂର ବ୍ୟାଧିଗ୍ରସ୍ତ ଦେହରେ ଆପଣାର କ୍ଷୁଧା ମେଣ୍ଟାଇ ଗାଧୁଆ ଘରେ ନିଜକୁ ଧୋଇଧାଇ ନିଜର ଅପକର୍ମକୁ ତା' ପାଖକୁ ପଠାଇ ଦେଉଛି । ଆଉ ଉପୁର ନିଷ୍ଠାର ପରାକାଷ୍ଠା ଧରି ପୂର୍ବର ବିଶିଷ୍ଟ ମହାମାନବ ରୂପେ ସମାଜକୁ ସୁରୁଖୁରୁରେ ଫେରି ଯାଉଛି । ଗୁପ୍ତ ରୋଗର କଷ୍ଟୁଟା ଯନ୍ତ୍ରଣା ଓ ଜୀବାଣୁକୁ ତାରି ଭିତରକୁ ଧୋଇଧାଇ ଖଲାସ କରି ଶତଶଯ୍ୟାର ସଖି ପୁଣି ଏକ ରମ୍ୟା ରମଣୀ ହୋଇ ରାତିର ନାଗରକୁ ଅପେକ୍ଷା କରୁଛି ।

ତା'ର ଶାଖା, ପ୍ରଶାଖାଙ୍କଠୁଁ ସେ ଶୁଣିଛି । ନିଶା ନିଷେଧର ପଦଯାତ୍ରା ପରେ ଏ ଜମାନାର ଗାନ୍ଧି, ବିନୋବାଜୀମାନେ ବ୍ୟବସ୍ଥିତ ବହୁ ଅଭ୍ୟର୍ଥନାର କ୍ଲାନ୍ତ ଅବରୋହଣ ପାଇଁ ସାମାନ୍ୟ ପାନରୁ ବହୁ ବୋତଲରେ ପହଞ୍ଚି ଗାଧୁଆ ଘରେ ସେମାନଙ୍କ ବହୁ ଉଦ୍‌ଗାରକୁ ତା ପାଖକୁ ଠେଲିଦେଇ ପରବର୍ତ୍ତୀ ଅଭିନନ୍ଦନ ପାଇଁ ନିଜକୁ ସୁସ୍ଥ, ସମର୍ଥ କରୁଛନ୍ତି ।

ସେ ହସିଛି । ପୁଣି ଆଜିର କେଉଁ ଅନସୂୟା ମୃତ୍ୟୁମୁଖୀ ଶଯ୍ୟାଶାୟୀ ସ୍ୱାମୀର ଗ୍ରହଦୃଷ୍ଟି ଖଣ୍ଡନ ଲାଗି ନିରନ୍ତର ଉପବାସ ବ୍ରତ ପାଳନ କରୁ କରୁ ରୋଷାଇ ଘରେ ସୁବିଧା ଦେଖି ଯେତେ ଶୀଘ୍ର ପାରେ ପାଟି ଚଳାଇ ନେଇଛି ଓ ଶଂକିତା ସାବିତ୍ରୀଟି ବାସନରେ ଅଟକି ଯାଇଥିବା ପାରଣାର ଅବଶିଷ୍ଟକୁ ତା ପ୍ରଶାଖାର ଶେଷ ଅଂଶରେ ତରତର ହୋଇ ଅଜାଡ଼ି ଦେଇ ବ୍ରାହ୍ମଣ ଗୋସେଇଁଙ୍କ ଡାକରା ଶୁଣି ଦେବାଭିଷେକ ପାଇଁ ନୈବେଦ୍ୟ ସଜାଡ଼ିବାକୁ ତତ୍ପର ହୋଇ ପଡ଼ିଛି ।

ଅନେକ ଘଟଣା ସେ ଅଙ୍ଗେ ନିଭାଇଛି । ହତ୍ୟାକାରୀ ହତ୍ୟା ପରେ ହତ୍ୟାର ଆୟୁଧକୁ ତାର ବହଳ ଆସ୍ତରଣ ତଳେ ସମାଧି ଦେଇଛି । ଆଉ ପୋଲିସ ଅଫିସର ଘର ଖାନତଲାସ ହେବାର ସୁଙ୍ଗୁରା ପାଇ ସହଜଲବ୍ଧ ବଡ଼ା ବଡ଼ା ନୋଟର ମୁହାଁସକୁ ମୁର୍ଚ୍ଛି ଦେଇ ତାର ନିଘୁଟିଆ ଭୁଡଭୁଡ଼ ଦେହ ଭିତରେ ପ୍ୟାଡ଼େ ସିଆଡ଼େ ଗୁହାଁ ଆଖି ବୁଜି ମାଡ଼ି ଦେଇଛି । ରକ୍ଷିତାର ରକ୍ତଦାନକୁ ସୁରକ୍ଷିତ କରିବା ଲାଗି ଚାରି ଧର୍ମପତ୍ନୀ ସତ୍ୱେତ ଅନ୍ଧ ପ୍ରେମର ଅଭିନୟ କରି ତାକୁ କୌଶଳରେ ବିଷ ପିଆଇ ବିଷ ଶିଶିକୁ ସ୍ୱାମୀ ସତ୍ୟବାନ ତା ଭିତରକୁ ଅକାତରରେ ଫିଙ୍ଗି ଦେଇଛି । ପୁଣି କେଉଁ

ସ୍ୱାମୀ ସୁହାଗିନୀ ବୀରବଣୀ ସ୍ୱାମୀର ଅପ୍ରତ୍ୟାଶିତ ଉପସ୍ଥିତିରେ ବିବ୍ରତ ହେଲେ ବି ଉପରେ ନିଜକୁ ଉତ୍ଫୁଲ୍ଲ ରଖି ସ୍ୱାମୀଙ୍କୁ ବିପୁଳ ପ୍ରେମର ଓଠସ୍ପର୍ଶ ଦେଇ ଅଟକାଇ ରଖିଛି ଓ ପୂର୍ବ ଇସାରା ମୁତାବକ ଘରେ ମହଜୁଦ ଥିବା ପ୍ରୀତିପ୍ରାର୍ଥୀ ପରପୁରୁଷ ତା ପାଇଁ ଉଦ୍ଦିଷ୍ଟ ଗଳାବାଟ ଦେଇ ହାମୁଡ଼ାଇ ହାମୁଡ଼ାଇ ପଳାଇଗଲା ବେଳେ ତା ଭିତରକୁ ଗଳି ପଡ଼ିଲେ ବି ଘୃଣାରେ ଛେପ ପକାଇବାକୁ ଫୁରସତ ପାଇନି ।

ଭିତରେ ଖାଲୁ ପୋଷି ବାହାରେ ଭଲେଇ ହେବାର ତାମସା ସେ ବହୁତ ଦେଖିଛି, ଶୁଣିଛି, ଜାଣିଛି । ସେ ନିଜେ ନର୍ଦ୍ଦମା । ସଦା ଘୃଣ୍ୟ, ସଂଗତ ବର୍ଜିତ । ହୀନମନ୍ୟତା ତାଡ଼ନାରେ ସେ ତିକ୍ତ ହେଇ ଉଠିଲାବେଳେ ନାକ ଟେକୁଥିବା ସଦାଆଦରର ମହାମାନ୍ୟମାନଙ୍କ ସ୍ୱରୂପ ସୁଆଙ୍ଗ ତାକୁ ଅନେକ ସାନ୍ତ୍ୱନା ଦିଏ । ସେମାନଙ୍କ ନରକକୁ ନେଇ ସେ ନର୍ଦ୍ଦମା । ସେ ସେମାନଙ୍କର ଅସଲ ସ୍ୱରୂପ । ତଥାପି ତାକୁ ଦେଖିଲେ ସମସ୍ତଙ୍କ ହାତ ନାକ ପୁଡ଼ାକୁ ଆପେ ଆପେ ଉଠିଯାଏ । ଭିତର ବାହାରର ଏତେ ଫରକ ଧରି କେବଳ ଗୋଟିଏ ଜୀବ ଜୀବନର ଅଭିନୟ କରୁଛି, ସେ ହେଉଛି ମଣିଷ ।

ସେ ତ ଅନେକ ଚରିତ ଚରିତର ଗମ୍ଭୀରଘର ଗୁମର କାହାଣୀ ନିଜ ଆଗରେ ଦୋହଲାଇ ନିଜକୁ ଶୁଣାଇବା ପାଇଁ ଅପଣା ଭିତରେ ସାଇତି ରଖିଛି । ଏବେ ଗୋଟାଏ ନୂଆ ସୁଆଙ୍ଗର ତାଲସୁପାରି ଖେଳ ଦେଖି ସେ ହସିବ ନା କାନ୍ଦିବ, କିଛି ବୁଝି ପାରିଲା ନାହିଁ । ତା କଡ଼େ କଡ଼େ ଏକରୁ ଦୁଇ, ଦୁଇଟା ଅନେକ ହେଇ ଗ୍ଲେଟ ଗ୍ଲେଟ ଝାଟିମାଟିର ଝୁମ୍ପୁଡ଼ି ଧାଡ଼ି ଧାଡ଼ି ହେଇ ହାମୁଡ଼େଇ ପଡ଼ିଛନ୍ତି । କାନ୍ଥ ଥାଇ ନଥିବା କହିଲେ ଚଳେ । ପଲି ଗୁରିକଡ଼ିରେ ଭଙ୍ଗା ଇଟା, ନାଳୁଆ ମାଟିର ହାତେ, ଦୁଇହାତର ନାଆଁକୁ ମାତ୍ର କାନ୍ଥ । ଉପରକୁ ତାଙ୍କ ଟେକିଛି, ଛିଣ୍ଡା ତେଲେଇ, ତାଳ ବରଡ଼ା, ଚିରା ପଟିଆ, ଅଡ଼ୁଆ କୁଟା, ଏମିତି ମିଶିକି କିଛି । ପଲିର ମାଲିକମାନେ ପ୍ରାୟ ଅଧିକାଂଶ ରିକ୍ସାବାଲା । ବସବାସ କରନ୍ତି ଅତି ଗ୍ଲେଟ କୁଡ଼ିଆରେ । ବୃତ୍ତି ତାଙ୍କର ଅତି ଗ୍ଲେଟ ଯାହାଆର । ମନଟା କିନ୍ତୁ କେତେବା କେତେଭେ ଲମ୍ବା । ପ୍ରତ୍ୟେକଙ୍କ ଘରଣୀ ତେଣୁ ଏକାଧିକ । ରାଣୀ ହଂସପୁର ନଥିଲେ କଣ ହେଲା, ପାଟରାଣୀ, ଗ୍ଲେଟରାଣୀ କାହାର କାହାର ସେମାନଙ୍କ

ଛଡ଼ା ବଡ଼ ମହିଆରାଣୀ ବି ଉଆସରେ ଅଛନ୍ତି । ଫଳ ଭିତରେ କେବଳ ଖାଇଲା ପିଇଲା ବେଳେ ସେମାନେ ସମସ୍ତେ ଏକ ସମୟରେ ଦୃଶ୍ୟମାନ ହୁଅନ୍ତି । ରାଜରାଣୀଙ୍କ ଦିନରାତିର ଅଧିକାଂଶ ବଖତ ରାଜବାଟିର ବାହାରେ କଟିଯାଏ । ରାଜା ମହାରାଜାମାନେ ଶିକ୍‌ସା ଧରି ସକାଳୁ ସକାଳୁ ପଖାଳ ଗିଳି ପାରିଧିକୁ ବାହାରି ପଡ଼ନ୍ତି । ତା'ପରେ ରାଣୀ ମହାରାଣୀମାନେ ଟୋକେଇ ମୁଣ୍ଡେଇ ଶିକାରକୁ ସବାର ହୁଅନ୍ତି । କାହା ଟୋକେଇରେ ପରିବା' କାହାର ଶୁଖୁଆ, କାହାର ଦାନ୍ତକାଠି, କାହାର ଘସିଗୁଣ୍ଡା, କାହାର ପାଇଖାନା ପାଇଁ ମାଟିଗୁଳା । ରାସ୍ତା କଡ଼ରେ ପସରା ମେଲେଇ ପାନ ଚୂକୁଳାଇ, ପିକାଟାଣି, ଆଖି, ହସ, କଥାଲଥାର ଠାଣିମାଣିରେ ରାତିର ଶିକାର ଆଗରେ ଥୋପ ହଲାନ୍ତି । କେହି ଅବଶ୍ୟ ଫାନ୍ଦରେ ପଡ଼ିବେ ତ । ଦିନଯାକ ଖାଇବା ପାଇଁ ଖଟଣି, ଖଟଣି, ଖଟଣି । ରାତିସାରା ବଞ୍ଚି ରହିବା ପାଇଁ ବି ବେପାର, ବେପାର, ବେପାର ।

ରାଜପୁତ୍ରମାନେ ରୋଜଗାରର ଅଧିକାଂଶ ଅଂଶକୁ ବୋତଲକୁ ସମର୍ପି ଦେଇ ଯେଉଁଠି ପାରେ ସେଠି ପଡ଼ିଯାନ୍ତି । ସାଇଯାକର ସବୁ ଭବନ ଯେତେବେଳେ ସମସ୍ତଙ୍କ ପାଇଁ, ଆଉ ସମସ୍ତେ ବି ସମସ୍ତଙ୍କ ଲାଗି । ସକାଳେ କିନ୍ତୁ ଘରେ ରାଜରାଣୀ ସମ୍ବାଦ ଆରମ୍ଭ ହୋଇଯାଏ । ସବୁ ପଇସାକୁ ଚେନ୍ଦି କରି । ରାଜରାଣୀଙ୍କ ରୋଜଗାର ଉପରେ ଘର ଚଳେ । ସେମାନେ ରାଜକୁମାରମାନଙ୍କ ମଣୋହି ଦାୟିତ୍ୱ କେବଳ ନିଅନ୍ତି ନାହିଁ, ବସ୍ତିର ଦାଦାଙ୍କ ମାମୁଲ ସେମାନଙ୍କୁ ମଧ୍ୟ ଦେବାକୁ ପଡ଼େ । ବେଳେବେଳେ ଦାଦାଙ୍କ ଦେୟକୁ ପଇସାରେ ନଦେଇ ଦେହରେ ଦେବାକୁ ହୁଏ । ଅବଶ୍ୟ ଦାଦାଙ୍କ ଶୁଭଦୃଷ୍ଟି କାହା ଉପରେ ପଡ଼ିଲେ ତ ଭଲ କଥା । ବେଳେବେଳେ ତାଙ୍କର ଶୁଭଦୃଷ୍ଟିକୁ ଝିଙ୍କି ଆଣିବାକୁ ପଡ଼େ । ଏଇ ଶୁଭଦୃଷ୍ଟି ହିଁ ଘରେ ଅଶୁଭ ଅଧ୍ୟାୟ ସୃଷ୍ଟି କରେ । ଦାଦା ଯେଉଁ ରାତି ମାଂସର ମାମୁଲ ନିଅନ୍ତି ସେ ରାତିରେ ଲୋକସାନ ସବୁଠୁ ବେଶି । ବ୍ୟବସାୟ ପତର ବନ୍ଦ କରି ସେଦିନ ସାରାରାତିଟା ଦାଦାଙ୍କୁ ସମ୍ଭାଳିବାକୁ ପଡ଼େ । ସେ ରାତିଟାରେ ରାଣୀମାନଙ୍କ ପାଇଁ ଟିକିଏ ବିଶେଷ ଆକର୍ଷଣର ସମ୍ଭାବନା ଥାଏ । ଦାଦା ଯେଉଁଦିନ ବିଶେଷ ମସଗୁଲ ଥାଆନ୍ତି, ସେଦିନ, ବାବୁଆମା ଗୃହ ସାଙ୍ଗରେ ବିଦେଶୀମାଲ ବେଳେବେଳେ ପାଟିରେ ବାଜେ । କିନ୍ତୁ ସେଦିନ ନଗଦ

ରକମ ଢଗ ନଦାରଦ । ପଇସା କମ ଆମଦାନୀ ହେତୁରୁ ପରଦାନ ରାଜପୁତ୍ର-ମାନଙ୍କ ଖାନାପିନାରେ ଗଡ଼ବଡ଼ ହୁଏ । ତେଣୁ ସେମାନେ ବିଶ୍ୱମୂର୍ତ୍ତି ଧରନ୍ତି । ରାଣୀମାନେ ବି କମର ବାନ୍ଧି ସଂହାରଚଣ୍ଡୀ ସାଜନ୍ତି । ତାପରେ ପାଟିତୁଣ୍ଡ, ଧୂମ୍ ଧଡ଼ାକ୍ ମାରପିଟ୍, ରାଗ କାନ୍ଦର ଦୃଶ୍ୟ ଦମେ ଚରଦା ଉପରକୁ ଆସେ । ବର୍ଷ୍ଣବାର ସାଇରନ୍ ବାଜଉଠେ । ଯେ ଯାହାର ଆୟୁଧ ଧରି ଅଭୁକ୍ତ ଅଶକ୍ତ ଦେହରେ ଶକ୍ତିକୁ ଜବରଦସ୍ତ ଭର୍ତ୍ତିକରିବାକୁ ବାଧ୍ୟ ହୁଅନ୍ତି । ତାପରେ ନଗ୍ନ ମେଣ୍ଢାକୁଆ ପରି ଆହାର ଅନ୍ୱେଷା କରିବାକୁ ବାହାରକୁ ବାହାରି ପଡନ୍ତି ।

ତା ପଡ଼ୋଶୀ ରାଜ୍ୟର ରାଜା ରାଣୀଙ୍କ ଉପରେ ସମସ୍ତଙ୍କର ସବୁ-ବେଳେ ସନ୍ଦେହର ଆଖି । ଦିନ ଦିପହରେ ଥାନାର ସାମନା ସାମନି ବେପରବାୟ ଚୁରି ଭୂଷା ହେଉଛି, ଦପ୍ତର ଚାଲୁଥିବାବେଳେ ବେଙ୍କ୍ ରକ୍ଷୀ ସଶସ୍ତ୍ର ସ୍ୱଦେହରେ ସ୍ୱକର୍ମ କରୁଥିବା ସମୟରେ ବେଙ୍କ୍ ଲୁଟ ଚାଲିଛି, ବିଚ୍ ବଜାର ଛକରେ ସମସ୍ତେ ଦେଖୁ ଦେଖୁ କାହାଉପରେ କ୍ଷୁର୍ ଚଢ଼େଇ ଦିଆ ଯାଇଛି, ଇମିତି ଇମିତିର ନିତ୍ୟନୈମିତ୍ତିକ ହବା ତ ହେଉଛି । ଅପରାଧର ସର୍ଦ୍ଦି, ଛିଙ୍କ, ଝାଡ଼ାବାନ୍ତି, ବସନ୍ତ ଯାହା ଯେଉଁଠି ହେଲା, ବସ୍ତି ରାଜ୍ୟର ଘରଦ୍ୱାର, ଜନଷଣ୍ଢ, ରାଜରାଣୀ, ସମସ୍ତଙ୍କ ଉପରେ ଖାମ୍ ଖାମ୍ ଧୁମଧଡ଼ାକ୍ ର ଅଭିଯାନ ଚାଲିଛି ।

ଶାନ୍ତିରକ୍ଷକମାନେ ସେ ଅଶାନ୍ତ ରାଜ୍ୟର ଅରକ୍ଷ ଅରକ୍ଷାଙ୍କ ସୁରକ୍ଷା ଆଳରେ ଅତ୍ୟାଚାରର ଶିହାଡ଼ିର ଫାଇଦା ବଦଳରେ ଦାମ ତ ନିଅନ୍ତି, ଦେହର ସଉଦା ବି କରନ୍ତି । ଏଇ ଦାଦା ଓମ୍ରାଙ୍କର ଦୈତ୍ୟଦଳଙ୍କୁ ବନ୍ଧକା ବଳି ଦେଇ ଦେଇ ସେମାନେ ଦିକଦାର ହେଲେବି ସେମାନଙ୍କ ଖାପରୁ ଖସିଯିବାକୁ ବିଚରାଙ୍କର ଜୁ ନଥାଏ । କାରଣ ଅନ୍ୟ କେଉଁଠି ରାଜ୍ୟ ସ୍ଥାପନ କରିବାକୁ ସେମାନଙ୍କର ରାଜକୋଷ କେବେ ନଥିଲା, କେବେ ହେବ ବୋଲି ବି ସ୍ୱପ୍ନ ଦେଖିବାକୁ ସେମାନଙ୍କର ଫୁରସତ୍ ନଥାଏ ।

ଏ ରାଜ୍ୟର ବାସିନ୍ଦାମାନେ ସମସ୍ତଙ୍କ ଆଖିରେ ସଦା ଅବୈଧ । ତାଙ୍କର ରହିବା, ଖାଇବା, ଶୋଇବା, ହସିବା, କାଶିବା, ଦଗୁଛନ୍ତି ବିଧିସମ୍ମତ ନୁହେଁ । ସେମାନେ ନର୍ଦ୍ଦମାର ପଡ଼ୋଶୀ । ତେଣୁ ସମସ୍ତଙ୍କ

ଆଗରେ ନ୍ୟାୟତଃ ନର୍ଦ୍ଦମା ଗନ୍ଧର ସେମାନେ ଗୋଟିଏ ଗୋଟିଏ ଦୟନୀୟ ନମୁନା । ସେମାନେ ବର୍ଜିତ । ଅତଏବ ବର୍ଜନୀୟ ।

ସମସ୍ତଙ୍କ ମୁହଁରେ ସେମାନଙ୍କ ବିରୁଦ୍ଧରେ ସବୁବେଳେ ଅଭିଯୋଗ । ଖବରକାଗଜ ବାଲା, ମଗଜ ଥିବା ଲୋକେ, ବସ୍ତିବାଗଲା ମଣିଷ ବି ସମସ୍ତେ ପାଟି କରି ଉଠନ୍ତି । ସରକାରୀ ଜାଗାକୁ ଅନଧିକାର ଦଖଲ କରି ସେମାନେ କେବଳ ସର୍ବାଙ୍ଗ ସୁନ୍ଦର ସହରକୁ କଦାକାର କରୁନାହାନ୍ତି, ସେମାନେ ସମସ୍ତେ ସମାଜର ଭୟଙ୍କର ସଂକ୍ରାମକ ବ୍ୟାଧି । ଶ୍ରୀମୟ ସହରର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, ସମ୍ମାନ ଦୃଷ୍ଟିରୁ ସେ ଗୁଡ଼ାକୁ ଅତିଶୀଘ୍ର ନିକାଲି ଦିଆଯିବା ସର୍ବାଦୌ ଦରକାର ।

ସର୍ବସାଧାରଣ, ସଂପାଦକ, ସଭାସମିତିର କଡ଼ା କଡ଼ା ମନ୍ତବ୍ୟରେ ପୌରସଂସ୍ଥାର ନିଦ ଭାଙ୍ଗିଲା । ଅବଶ୍ୟ ତାଙ୍କୁ ଶୋଇପକାଇବାପାଇଁ ବସ୍ତି-ରାଜ୍ୟର ମହାରାଣୀମାନେ ନିଜେ ଯାଇଁ ନିଦମାଉସୀର ନାନାବାଇଆ ଗୀତ ଗାଇ ଆସୁଥିଲେ ବା ସଂସଦର ଦୂତମାନେ ରାତିଅଧରେ ଆସି ନିଦ ବଟିକା ନେଇ ଯାଉଥିଲେ । ଏଥର କିନ୍ତୁ ବସ୍ତି ରାଜ୍ୟରେ ନୋଟିସ ଜାରି ହେଲା ଯେ ସମସ୍ତେ ଅମକେଇ ଦିନ ଆପେ ଆପେ ଉଠିଯିବେ, ନହେଲେ ତମକେଇ-ଦିନ ସେମାନଙ୍କୁ ଜବରଦସ୍ତି ଉଠାଇ ଦିଆଯିବ । ସମସ୍ତେ କାକୁସ୍ଥ ହୋଇ ମହାଦର୍ପୀଢ଼ ଦାଦାମଣିମାଙ୍କ ଗ୍ରୀମୁରେ ଗୁହାରି ଜଣାଇଲେ । ଦାଦା ବାହାଦୁର୍ ସେମାନଙ୍କୁ ନିଦକରେ ରହିବାକୁ ଅଭୟ ଦେଲେ ।

ଜୋର କରି ଘର ଭଙ୍ଗାଯିବାର ତାରିଖ ଆସିଲା । ଘରଭଙ୍ଗା ଧନ୍ଦାର କାରପଟଦାର ବି ସୈନ୍ୟସାମନ୍ତ ଧରି ପହଞ୍ଚିଗଲେ । ସେଦିନ ସକାଳୁ ବସ୍ତିର ଏମୁଣ୍ଡ ସେ ମୁଣ୍ଡରେ ଦାଆ ହାତୁଡ଼ି ଶବଳ ଲାଲପତାକା-ପୋତି ଦରିଦ୍ର ବନ୍ଧୁମାନେ ଧାରଣା ଦେଇସାରିଥିଲେ । ବସ୍ତି ଭଙ୍ଗାଯାଇ ପାରିବନାହିଁ । ବସ୍ତିବାସିନ୍ଦା ନଗରର ନାଗରିକ । ଅଧିକନ୍ତୁ ସେମାନେ ନଥିବା ସମ୍ପ୍ରଦାୟର ଦଳିତ ଜନତା । ସେମାନଙ୍କ ଥାଇଥାନର ବିକଳ୍ପ ବ୍ୟବସ୍ଥା ନକରି ସେମାନଙ୍କୁ ନିକାଲି ଦିଆଗଲେ ସମ୍ବିଧାନର ଖିଲାପ କରାଯିବ ।

ବସ୍ତିର ରିକ୍‌ସାବାଲା ମରଦମାନେ ରିକ୍‌ସା ଗଡ଼ାଇ ମାଇକିନା-ମାନେ ମୁଣ୍ଡରେ ଟୋକେଇ ମୁଣ୍ଡେଇ ନେତାଙ୍କ ନେତୃତ୍ୱରେ ସହର ପରିକ୍ରମା କଲେ । ଜିନ୍ଦାବାଦ୍, ମୁର୍ଦ୍ଦାବାଦର ସ୍ଲୋଗାନ ଚାଲିଲା । କୃତ୍ରିମ ଶବ ସଂସ୍କାର କରାଗଲା । ପୌର ସଂସ୍ଥାର ଅବିଚାର, ଅନାଚାର, ଅତ୍ୟାଚାରର ନିନ୍ଦାବାଦ କରାଗଲା । ଖବରକାଗଜ ବାଲା ବି କାଗଜ ବିକିର ଖୋରାକ ପାଇ ସ୍ୱର ବଦଳାଇ ସରକାରୀ ଦଳ ଉପରେ ଶୋଧନା ଆରମ୍ଭ କରିଦେଲେ ।

ଆଗରେ ଇଲେକ୍‌ସନ୍ । ନାଲି ପତାକା ଗୋଷ୍ଠୀ ବସ୍ତିର ଭୋଟକୁ ହାତ ପରିଠି କରିବାକୁ ଷଡ଼ଯନ୍ତ୍ର ଚଳେଇଲେଣି । ଉପର ନେତାଙ୍କ ଚେତା ପଶିଲା । ଜନସାଧାରଣ ତରଫରୁ ଅନଧିକାର ବସ୍ତି ନିର୍ମାଣ ଉପରେ ସମାଲୋଚନା ଚାଲିଲା । ଏଣେ ଗରିବ ମାର୍କା ଗଣପଣ୍ଡମାନେ ବସ୍ତି ବାସି-ନ୍ଦାକୁ ମଡେଇ ଚଡେଇ ହାତାହାତି ପାଇଁ ହାଙ୍କୁଡ଼ି ଖାଇଲେ । ଶାସକ ଦଳଙ୍କ ବେକ ପାଖରେ ଦୁଇଧାରିଆ ଛୁରି । ଏଣୁ ମାଇଲେ ଗୋ ହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟାର ସମସ୍ୟା । ଯଦି ଲଠିଗୁଳି ଚାଲେ, ଇଲେକ୍‌ସନ ବେଳେ ଗରିବ ନିରାଶ୍ରୟଗୁଡ଼ାଙ୍କୁ ମାରି ପକେଇଲେ ବୋଲି ନିଆଁ ବାଣ ମାରିବେ । ଯଦି କିଛି ନକରି ଚିଦାମାଡ଼ି ବସିଯିବେ, ତେବେ ମାଇଚିଆ ସରକାରକୁ ହଟାଓ ବୋଲି ଧୂଆଁ ବାଣ ମାରିବେ ।

ଭିତର ଗଣ୍ଠି ଯାହା ପଡ଼ିବ, ତାକୁ ସେମାନେ କେମିତି ଫିଟାଇବେ, ସେଟା ତାଙ୍କର ବ୍ୟାପାର । ଆଗରେ ଇଲେକ୍‌ସନ । ବାହାର ଗଣ୍ଠି ଛିଡ଼ିଗଲେ ଦିଲ୍ଲୀବାଲା ତାଙ୍କୁ ହଲାଇ ଦେବେ । ସାଲିସ୍‌ରେ ହେଉ ବା ସଂଗ୍ରାମରେ ହେଉ, ସମସ୍ୟାର ଶେଷ ହୋଇଛି ବୋଲି ଦିଲ୍ଲୀ ମହଲରେ ସଫେଇ ଦେବାକୁ ହେବ ଇଲେକ୍‌ସନ ଆସୁଛି । ତାଙ୍କର ଯିବା ରହିବାର ପେଣ୍ଡୁଲମ ହଲୁଛି ।

ଶେଷରେ ସରକାର ବିଜ୍ଞପ୍ତି ଦେଲେ ଯେ ଦୁଃସ୍ଥ ବସ୍ତି ବାସିନ୍ଦାର ଦୁର୍ଗତି ପ୍ରତି ସରକାର ସଦୟ ଦୃଷ୍ଟି ଦେଇ ବର୍ତ୍ତମାନ ପାଇଁ ବସ୍ତି ଉଠାଇ ଦେବା ଯୋଜନାକୁ ସ୍ଥଗିତ ରଖିଲେ । ସେମାନଙ୍କ ପାଇଁ କଣ କରାଯାଇ

ପାରିବ, ସେ ବିଷୟ୍ପରେ ବିଶେଷ ଅନୁଧ୍ୟାନ କରିବା ନିମିତ୍ତ ଏକ ସ୍ୱତନ୍ତ୍ର କମିଟି ଗଠନ କରିବାକୁ ସରକାର ବିଚାରୁଛନ୍ତି । ପ୍ରକାଶ ଥାଉକି ବସ୍ତି ଅଞ୍ଚଳରେ ନୂତନ ଗୃହ ନିର୍ମାଣ ପାଇଁ ସରକାର ଆଉ କଦାପି ସୁବିଧା ଦେବେ ନାହିଁ ।

ନର୍ଦ୍ଦମାର ନଈ ହସୁଥିଲି । ସମସ୍ତେ ନିଜର ନର୍ଦ୍ଦମା ଉପରେ ଜରିକାଗଜ ମଡ଼ାଇ ବାସନାର ଛୁଙ୍କ ଦେଇ ଗୋଲାପ ବୁହାଇ ଯାଉଛନ୍ତି ।



# ଏକାନ୍ତ ବ୍ୟକ୍ତିଗତ

॥ ଏକ ॥

ମୁଁ ନୂପୁର । ମୁଁ ମନର ଶିକାର କରେ ମୋ ରୂପର ଅନୁରଣନରେ ଅନ୍ୟର ମନକୁ ମୋ ଆଡ଼େ ଟାଣି ଟାଣି, ଭିଣି ଭିଣି ମୁଁ ଅନେକ ଆରାମ ପାଏଁ । ମୋ ଦେଖିବା ଗ୍ରାହକଙ୍କ ଆଖିରେ ଯଥେଷ୍ଟ ଭୋକ ଦେବାକୁ ମତେ ମୁଁ ଆର୍ଶି ଆଗରେ ପରଖ କରି ପଦାକୁ ବାହାରେ । ଦୁଗ୍ଧ ଅଳତାର ରଙ୍ଗ ମୋ ଦେହର ସହଜାତ ସମ୍ପତ୍ତି । ସେଥିରେ ଆହୁରି ଗ୍ଲାମର୍ ଦେବାକୁ ଅଭିଯାତ ଶାଢ଼ୀ, ବ୍ଲାଉଜ, ମେକ୍‌ଅପ୍‌ର ସାମଗ୍ରୀ ପାଇଁ ମୁଁ ମୋର ସ୍ୱାମୀଙ୍କୁ ଖର୍ଚ୍ଚାନ୍ତ କରି କରି ନସ୍ୟାନ୍ତ କରେ ଅନ୍ୟକୁ ଦହନ ଦେବାକୁ ନିଜର ଦେହରେ ବିଶେଷ ବିଶେଷ ଯୁକ୍ତ କରି ମୋର ଆକର୍ଷଣକୁ ଫେଣେଇ ଦିଏଁ । ଅନ୍ୟର ମନକୁ ବିପନ୍ନ କରିବା ମୋର ଏକ ଭାବଗତ ସଉକ । ମୋ ସ୍ୱାମୀ ମୋର ବନ୍ଧାବନ୍ଧି ଗ୍ରାହକ । ସେ ମତେ ଏଇ କେତେବର୍ଷ ହେଲା ଦେଖି ଦେଖି ଆସୁଛନ୍ତି । ମତେ ଦେଖିଲାଭଳି ରଖିବାକୁ ସଜାଇ ସଜାଇ ଗୁଳିଛନ୍ତି । ତାଙ୍କୁ ମତେ ଦେଖାଇ ଦେଖାଇ ମୁଁ କ୍ଳାନ୍ତ ହୋଇ ପଡ଼ୁଛି । ତାଙ୍କୁ ଦେଖିବାରେ ମୋର ଅରୁଚି ଆସି ଯାଉଛି । ମୁଁ ଚାହେଁ ନୂଆ ଆଖିର ଆବେଗ । ରୂପ ମୋର ଦରକାର କରୁଛି ନୂଆ ଚାହାଁଣିର ମାଦକତା ।

ଏଇମିତି ମୁଁ ନୂପୁର । ସେଦିନ ସ୍ୱାମୀଙ୍କ ସାଙ୍ଗରେ ସିନେମା ଦେଖିବାକୁ ଯାଇଥିଲି । ଏଇତ ସୁଯୋଗ । ଶିକାରର ଅରଣ୍ୟ ଭିତରକୁ ପଶିଯିବାର ମୌକା । ଚାକିରାଣୀକୁ କହି ତଟକା କେତକୀ ଫୁଲ ମଗାଇ ନେଲି । କେତେକୀ ପାଖୁଡ଼ାକୁ ସରୁ ସରୁ କରି ଚିରି ନେଇ ନିଜର ଖୋଷାକୁ ସଜାଇବାକୁ ଲଗିଲି । ମୋର ବହଳ ବାଳପେନ୍ଥା ଭିତରେ କେତକୀ ପାଖୁଡ଼ାର ସୂତାକୁ ଛନ୍ଦି ଛନ୍ଦି ମୋ କେଶକୁ ମୁଁ କୋଣାର୍କର ଶିଳ୍ପ ଦେଲି । କେଶବତୀ କନ୍ୟାର ମନନେଇ ସିନ୍ଧାର ରଜାପୁଅକୁ କେନ୍ଦରି ଧରାଇବାର ସ୍ୱପ୍ନ ଭିତରେ ମୁଁ ମୋର ଖୋଷାର ପରିପାଟୀକୁ ଯେତେ ବେଶି ହୋଇପାରେ ଶ୍ରୀ ଓ ଆକର୍ଷଣ ଦେବାକୁ ଲାଗିପଡ଼ିଲି ।

ସୋ ଭାଙ୍ଗିଲା ପରେ ହଲ୍ ଆଗର ୱେଟିଙ୍ଗ ସ୍ପେସ୍‌ରେ ମୁଁ ଠିଆ ହୋଇଥାଏଁ । ଶିକାରର ବ୍ୟର୍ଥତାରେ ମନ ମୋର ନଇଁପଡ଼ିଥାଏ । ସଂଧ୍ୟା ପରେ ରିକ୍‌ସାରେ ପିକ୍‌ଚର ଯିବାକୁ ପଡ଼ିଲା । ପୁଣି ପହଞ୍ଚିଲା ବେଳକୁ ସୋ' ଆରମ୍ଭ ହୋଇ ସାରିଛି । ତରତର ହୋଇ ହଲ୍‌କୁ ପଶିଲୁ । ଅନ୍ଧାରରେ ମୋ ଖୋଷାରଶ୍ମି ଅଭୁକ୍ତା ହୋଇ ଆଖିର ଅଜଣାରେ ରହିଗଲା । ବଡ଼ ଅବଶୋଷ ଲାଗୁଥାଏ । ସ୍ୱାମୀ ମୋର ପାଖ ଷ୍ଟେସନାରୀ ଦୋକାନରୁ ମୋ ପାଇଁ କିଛି କସ୍‌ମେଟିକ ଆଣିବାକୁ ଗଲେ । ମତେ ଡାକୁଥିଲେ । ମୁଁ ଇଚ୍ଛାକରି ଗଲି ନାହିଁ । କେଶରେ ମୋର କେତକୀର କୋଣାର୍କ ସ୍ୱୀକୃତି ପାଇଁ କାତର ହୋଇ ପଡ଼ୁଥିଲା । ମୁଁ ୱେଟିଙ୍ଗ୍ ହଲ ବଡ଼ ଦର୍ପଣ ଆଗରେ ଠିଆ ହୋଇ ରହିଲି ।

ମୋ ଆଗରେ ଆର୍ଶି ଉପରେ ଜଣଙ୍କ ଛବି ଚହଲିଗଲା । ମୁଁ ଚମକି ପଡ଼ିଲି । ମୋ ଚମକ ଥମିଗଲା ପରେ ମୁଁ ଆର୍ଶିକୁ ଚାହିଁଲି । ମୋ ପଛଆଡ଼େ ଏକ ନିଶ୍ଚଳ ଛବି । ଏକ ଯୁବକ । ଆଖିରେ ଦେଖିବାର ଆବେଗ । ଅନେକ କମନୀୟ । ଭାବୁଥିଲି ଆଖି ନଚାଇ କେଶର ଭାଉ ବଢ଼େଇ ଦେବି କି ? ଡର ମାଡ଼ିଲା । ମୋର ଆଖିନଚା ଆର୍ଶିରୁ ସିଏ ନିଶ୍ଚୟ ଦେଖିନେବେ । ଦେଖିବା ସ୍ୱାଭାବିକ । ମୋ ପଛଆଡ଼ୁ ମୋତେ ଓ ନିଜକୁ ସେ ଦେଖୁଥିବେ । ସେ ଦେଖୁଥିଲେ, ଦେଖି ଯାଉଥିଲେ । ମୁଁ ଠଆରେଇ ଠିକ୍ ବୁଝିନେଲି, ମୋ କେଶସଜ୍ଜା ଛଡ଼ା ସେ କିଛି ଆଉ ଦେଖୁ ନ ଥିଲେ । ମୋ ଓଠରେ ଆପେ ଆପେ ହସ ଉଚ୍ଛୁଳି ଉଠିଲା । ଏକ ପରିତୃପ୍ତିର ନିଃଶବ୍ଦ ପ୍ରକାଶ ।

ସେ ମୋ ଖୋଷା ଭିତରେ ପ୍ରାୟ ହଜି ଯାଇଥିଲେ । ମୁଁ ଆତ୍ମ-ଶ୍ଲାଘାର ସ୍ୱାଦ ପାଇଲି । ମୁଁ ବି ନିଜେ ମଜ୍ଜିଗଲି । ସେ ହୁଏତ କବି । ମୋ କେଶର କୁଞ୍ଚିକମ ସନ୍ଧିରେ କବିତାର ଛନ୍ଦପାତ କରୁଛନ୍ତି । ନ ହେଲେ ବା ଦାର୍ଶନିକ । ମୋ କେଶର ଆକାଶ ଭିତରେ ସୃଷ୍ଟିର ରହସ୍ୟ ଖୋଜୁଛନ୍ତି । କିମ୍ବା ଧରନ୍ତୁ ସ୍ଥପତି । ମୋ କେଶଶିଳ୍ପକୁ ଗୁରୁତ୍ୱ ଦେଇ ମୋ ବନ୍ଧାଣି ହାତରେ ନିରୀକ୍ଷା କରୁଛନ୍ତି, ପରୀକ୍ଷା ନେଉଛନ୍ତି । ସେ ଯିଏ ହୁଅନ୍ତୁ, ନିଶ୍ଚୟ ତାଙ୍କର ଓଜନ ଅଛି । ମୋର କୃତିତ୍ୱ, ସ୍ୱପ୍ନରେ ମୋର ନିଜର ଓଜନ ବି ବଢ଼ି ବଢ଼ି ଯାଉଥିଲା । ମୁଁ ଚାଲିଯାଇ ପାରିଲି ନାହିଁ । ଗୋଡ଼ ମୋର

ମାଟିରେ ଯେମିତି ପୋତି ହୋଇ ପଡ଼ିଥିଲି ତାହା ଉପରୁ ମୋର ଚଞ୍ଚଳ ପଣିଆ ଖସି ପଡ଼ିଲା । ମୁଁ ଅଟକାଇ ପାରିଲି ନାହିଁ ।

ହଠାତ୍ ଏକ ଗୃପଡ଼ ଶବ୍ଦରେ ବୁଲି ପଡି ନିଜକୁ ସଜାଡ଼ି ନେଲି । ସ୍ୱାମୀ ମୋର ତାଙ୍କୁ ଆଘାତ କରିସାରି ସାଙ୍ଘାତିକ ଆଘାତ ପାଇଁ ଧମକ ଦେଉଛନ୍ତି । ମୋ ସ୍ୱାମୀଙ୍କ ଭାଷଣର ଭାଷାରେ ଭଣ୍ଡ, ପାଷଣ୍ଡ, ପାପୀ, ପାପିଷ୍ଠ, ଦୁରାଚାରୀ, ଦୁଷ୍ଟ ସେ ବିଚରା ସବୁ ହୋଇ ସାରିଥିଲେ । ସ୍ୱାମୀ ମୋର ଉତ୍ତାପ ଦେଉଥିଲେ । ପରିସ୍ଥିତି ଉତ୍ତପ୍ତ ହୋଇ ଉଠୁଥିଲା । ମୁଁ ପ୍ରମାଦ ଗଣିଲି । ସନ୍ଦେହ ମୋର ପ୍ରଶ୍ନ ହୋଇ ଆଉ ରହିଲା ନାହିଁ । ସେ ଅନ୍ୟ ଲୋକଙ୍କ ଆକ୍ରମଣର ଶିକାର ହେଲେ ମୁଁ ମୋର ଆସ୍ଥିତ୍ୱ ଭିତରୁ ଖସିଯାଉଥିଲି । ନିଜକୁ ବଞ୍ଚାଇବାଲାଗି ଆଖି ବୁଜି ଦେଇ ନିଜକୁ ପଥରର ଅବସାଦ ଦେବାକୁ ଆରମ୍ଭ କରି ସାରିଥିଲି ।

ସେଦିନର ଘଟଣାକୁ ମୁଁ ପ୍ରାୟ ଭାବେ । କିଛିଟା ଦୁଃଖ ପାଏଁ, କିଛି କିଛି ଆତ୍ମପ୍ରସାଦ ବି ଅନୁଭବ କରେ । ହିମାଳୟ ଅଞ୍ଚଳର କୌଣସି ଏକ ଅଧିତ୍ୟକାର ଅଧିବାସିନୀ ବିଷାକ୍ତ ସାପକୁ ନିଜ ଦେହରେ କାମୁଡ଼ାଇ ନିଜକୁ ବିଭୋର କରେ । ସେ'ଦିନର ସେ ଘଟଣାର ଦୁଃଖକୁ ମୋ ଭିତରେ ପୂରାଇ ମୋରି ଅନୁଭବକୁ ମୁଁ ଜାବୁଡ଼ି ଧରେ ।

କିନ୍ତୁ ଶେଷରେ ଭାବେ—ସେଦିନ ତ ମୁଁ ନିଜକୁ ବ୍ୟକ୍ତ କରି ତାଙ୍କ ପାଇଁ ସଫେଇ ଦେଇ ପାରିଥାନ୍ତି ! ମୋର, ମୋ ସ୍ୱାଧୀନତା ପ୍ରତି କେତେ ଡ଼ର ?

॥ ଦୁଇ ॥

ମୁଁ ନିକି ଭାବୁଛି ।

ମୋ ବାପା ଡେଭିଡ ଡାଲଟନ୍ ଭାରତୀୟ ସେବା ସଂସ୍ଥାର ଜଣେ ସିନିୟର୍ ଅଫିସର ଥିଲେ । ପିଲାମାନଙ୍କୁ ନିଜର ମନ ନେଇ ବାହାରେ ବୁଲିବାକୁ ସେ ପ୍ରଶ୍ରୟ ଦେଉଥିଲେ । ମୁରବିମାନଙ୍କ ଚିନ୍ତାକୁ ପିଲାଙ୍କ ଉପରେ ଲଦିଦେବାକୁ ସେ ମୋଟେ ପସନ୍ଦ କରୁ ନ ଥିଲେ । ତେଣୁ ନିଜର ରୁଚି

ନେଇ ବଞ୍ଚିବାକୁ ମୁଁ ଅଭ୍ୟସ୍ତ ହୋଇ ଯାଇଥିଲି । ମୋ ଦେହର ଚୌଦ୍ଦବର୍ଷ ବୟସର ସମ୍ପୂର୍ଣ୍ଣ ମୌସୁମ ଆସିବା ଆଗରୁ ସେଠି ଫୁଟିବାର ବାସ୍ନା ବେଳସୁ ଆସି ଯାଇଥିଲା, ଯୌବନର ପୁଞ୍ଜି ପୂରାପୂରି ଗୋଟେଇବା ଆଗରୁ ମୁଁ ଦେହକୁ ଖର୍ଚ୍ଚ କରିବାକୁ ଆରମ୍ଭ କରିସାରିଥିଲି । ପୁରୁଷ ଦେହରୁ ପିଚକି ପଡ଼ୁଥିବା ଉତ୍ତେଜନା ଓ ଉତ୍ତାପର ଆଇଁଷିଆ ବାସ୍ନା ପାଇଲେ ମୋ ମାଂସ ଭିତରେ ଭେଳକର ଜୁଆର ଉଠୁଥିଲା । ମୋ ମନର ଅନୁଭବ ମୋ ଦେହ ଆଡ଼କୁ ସବୁବେଳେ ମୁହାଁଇ ଯାଇଥିଲା ।

ମୁଁ ବିବାହ କଲି । ସ୍ୱାମୀର ସ୍ତ୍ରୀ ହେଲି । ଅନେକର ପ୍ରୟାସକୁ ଏକର ସୀମା ଭିତରେ ଭର୍ତ୍ତି କରି ରଖିବାକୁ ବିବାହିତ ଜୀବନର ବିଧି ମତେ ବାଧ୍ୟ କଲା । ମୋ ରୁଚିକୁ ତରଳାଇ ନିର୍ଦ୍ଧାରିତ ଗୁଞ୍ଚରେ ଢ଼ାଳି ଏକ ସାମାଜିକ କଣ୍ଢେଇ ହେବାକୁ ମୁଁ ଅଭ୍ୟାସ କଲି । ଖରାଦିନେ ଖରାବେଳେ ଅମାନିଆ ପିଲାକୁ କବାଟ କିଳି ଶୋଇ ପକାଇଲେ ବି ସେ ଆମ୍ବତୋଟାର ଦୃଶ୍ୟ ଦେଖିଲା ଭଳି ମୁଁ ମୋର ଗୃହବଧୂର ଯନ୍ତ୍ରା ଭିତରେ ବେଳେ ବେଳେ ଅରଣ୍ୟର ସ୍ୱପ୍ନ ଦେଖୁଥିଲି ।

ସେଦିନର ଘଟଣା । ସ୍ୱାମୀଙ୍କ ସାଙ୍ଗରେ ବସ୍‌ରେ ବସି ଗୋଟିଏ ଲମ୍ବା ଯାତ୍ରା କରୁଥିଲି । କିଛିବାଟ ପରେ ଗୋଟାଏ ଷ୍ଟପେଜରେ ମୋ ପଛପାଖ ସିଟ୍‌ରେ ଜଣେ ଆସି ବସିଲେ । ଛଅଫୁଟ ପାଖାପାଖି ଉଚ୍ଚତା ସାଙ୍ଗକୁ ଗୋଲ ଗୋଲ ଫୁଲକା ଫୁଲକା ଗାଲ ଉପରେ ଆଗ ଓହ୍ଲୋଳା ଲମ୍ବା ଲମ୍ବା ନିଶ । କୁଞ୍ଚୁ କୁଞ୍ଚୁ ଛନ୍ଦାଛନ୍ଦ ବ୍ୟବସ୍ଥିତ ବିହଳିଆ ବାଳ ପବନ ଓ କ୍ଲାନ୍ତିର ଅତ୍ୟାଚାରରେ କାନ ପାଖରୁ ଅଳ୍ପ ଅଳ୍ପ ଉଲୁରି ଆସିଛି । ବୋତାମମୁକ୍ତ ସାର୍ଟ ଫାଙ୍କାରୁ ପ୍ରଶସ୍ତ ଲୋମଶ ଗୁଣ୍ଡ ବାହାର ହୋଇ ପଡ଼ୁଛି । ଗୁଣ୍ଡରେ କଳା କଳା ଲୋମବୃନ୍ତରେ ଟୋପା ଟୋପା ଝାଳର ଫୁଲ ଏଠିସେଠି ବିଞ୍ଛୁଡ଼ି ହୋଇ ପଡ଼ିଛି । ପଛଆଡ଼ୁ ଦଲକାଏ ପବନ ଆସି ଗୁଳିଗଲା । ଆଃ, କି ଗନ୍ଧ !

ସେ ଗନ୍ଧର ସାନ୍ନିଧ୍ୟ ପାଇଁ ମୋ ସିଟ୍‌ର ପଛକୁ ମୁଁ ଆଉଜିକି ବସିଲି । ସେ ବୋଧହୁଏ କ୍ଲାନ୍ତି ହଟେଇବା ପାଇଁ ମୋ ସିଟ୍‌ର ପଛପାଖ

ଧାରରେ ହାତରଖି ତା ଉପରେ ମୁହଁ ମାଡ଼ିଦେଲେ । ମୋର ସ୍ଫୁରଣା ଗନ୍ଧବ୍ୟାଧିର ଉପସର୍ଗର ସ୍ୱର ମୋ ଭିତରେ ମୁଁ ଶୁଣିବାକୁ ପାଇଲି ।

ତାଙ୍କ ଗୋଡ଼ ଆଙ୍ଗୁଳିର ଅଗ ମୋ ଗୋଡ଼ ଗୋଇଠିରେ ଖେଣ୍ଡି ହୋଇଗଲା । ମୁଁ ଚମକି ପଡ଼ିଲି । ସେ ହଠାତ୍ ତାଙ୍କ ତନ୍ଦ୍ରାଛନ୍ନ ମୁହଁକୁ ଉଠାଇ ସଜାଗ ହୋଇ ପଡ଼ିଲେ ଓ ତାଙ୍କ ଗୋଡ଼କୁ ଘୁଞ୍ଚାଇ ନେଇ ଜୁସିଆର ହୋଇ ବସିଲେ । ମୁଁ ମୋ ଗୋଡକୁ ଆଉ ଟିକିଏ ଟେକିଇ ନେଇ ପୁଣି ଏକ ସୁଯୋଗକୁ ଅପେକ୍ଷା କଲି । ସେ ପୁଣି ଡ୍ରାପ୍ସ କ୍ଲାନ୍ତିର କବଳରେ ପଡ଼ି ହାତ ଉପରେ ମୁହଁ ଲଦିଲେ । ମୋ ଗୋଡ଼ର ଗୋଇଠିକୁ ମୁଁ ଯେତେପାରେ ପଛକୁ ଘୁଞ୍ଚାଇ ଘୁଞ୍ଚାଇ ତାଙ୍କ ଗୋଡ଼ରେ ମୋର ସ୍ପର୍ଶ ଦେଲି । ଅରଣ୍ୟ ବାଘ ଦେହର ଗନ୍ଧ ଶୁଙ୍ଘି ପିଞ୍ଜରାବଦ୍ଧ ବାଘୁଣୀ ମନ ମୋର ହେଣ୍ଟାଳି ଉଠୁଥିଲା । ତା'ପରେ ମୋ ଗୋଇଠିକୁ ମୁଁ ତାଙ୍କ ଆଂଗୁଳି ଉପରେ ଅଳ୍ପ ଅଳ୍ପ ମାଡ଼ି ଧଇଲି । ସେ ହଠାତ୍ ଉଠିପଡ଼ି ମୋ ସିଟ୍‌ର ପଛଆଡ଼ୁ ମତେ ଦେଖିବାକୁ ଚେଷ୍ଟାକଲେ ବୋଧହୁଏ । ମୋର ପବନ ବିଧୂନିତ କେଶଗୁଡ଼ା ତାଙ୍କୁ ଡ୍ରାପ୍ସ ଆଉ କିଛି ଦିଶି ନ ଥିବ । ସେ ମୋ ଗୋଇଠି ତଳୁ ତାଙ୍କ ଗୋଡ଼କୁ ଖସେଇ ନେଇ ମୋ ଗୋଡ଼ ଉପରେ ତାଙ୍କର ଗୋଡ଼କୁ ରଖି ଆସ୍ତେ ଆସ୍ତେ ସାଉଁଳାଇବାକୁ ଲାଗିଲେ । ତା'ପରେ ତାଙ୍କ ଗୋଡ଼ରେ ମୋ ଗୋଡ଼କୁ ଖୁବ ଜୋରରେ ମାଡ଼ି ଧଇଲେ । ଆଙ୍ଗୁଳିଗୁଡ଼ାକ ତାଙ୍କର ଆବେଗର ଧକ୍କା ଖାଇ କଂପି କଂପି ଉଠୁଥାଏ । ତାପରେ ସେ ରହି ରହି ତାଙ୍କ ଗୋଡ଼ର ବୁଢ଼ା ଆଂଗୁଠିକୁ ଘସରାଇ ଘସରାଇ ମୋ ଶାଢ଼ୀ ତଳେ ତଳେ ମୋ ଗୋଡ଼ ଭଣ୍ଡାଯାଏ ଉଠାଇ-ନେଲେ । ମୋ ଆଣ୍ଠୁ ସନ୍ଧିରେ ଆଙ୍ଗୁଳିର ସଂଚାଳନା ଦେଇ ସେ ଘନଘନ ନିଃଶ୍ୱାସ ନେଲେ । ତାଙ୍କ ନିଃଶ୍ୱାସର ଶବ୍ଦ ଭିତରୁ ଉଚ୍ଚାଟନ ମନ୍ତ୍ରଧ୍ୱନି ମୋର ସ୍ନାୟୁମାନଙ୍କୁ ଆସ୍ତେ ଆସ୍ତେ ବ୍ୟସ୍ତ କରି ପକାଇଥିଲା । ମୁଁ ଆଣ୍ଠୁ ସନ୍ଧିରେ ତାଙ୍କର ଉଚ୍ଛନ୍ନ ଆଙ୍ଗୁଳିକୁ ଜୋରରେ ଚିପି ଧଇଲି ।

ହଠାତ୍ ବସ୍‌ରେ ଆଲୁଅ ଜଳି ଉଠିଲା । କେଉଁ ପାସେଞ୍ଜରର ପକେଟରୁ ପଇସା ଗଳି ପଡ଼ିଲା ବୋଲି ସେ ଲାଇଟ ଲାଇଟ ବୋଲି ପାଟି କଲେ ମୁଁ ସିଟ୍‌ରୁ ଉଠିପଡ଼ି ଠିଆ ହେଲି । ସେ ତାଙ୍କ ଗୋଡ଼ ମୋ ଆଣ୍ଠୁ

ସନ୍ଧିରୁ କାଢ଼ିନେଲାବେଳେ ତାଙ୍କ ପାଖ ସିଟ୍‌ର ସହଯାତ୍ରୀ ଜଣଙ୍କ ବୋଧହୁଏ କିଛି ସନ୍ଦେହ କରିଥିଲା । ମୋ ଉଠି ପଡ଼ିବା ଦେଖି ତାର ସନ୍ଦେହ ବଢ଼ିଗଲା । ସେ ଗାଳି ଦେବାକୁ ଆରମ୍ଭ କରିଦେଲା । ମୋର ସ୍ୱାମୀ ଘୁମେଇ ପଡ଼ିଥିଲେ । ସେ ବି ପାଟି ଶୁଣି ଉଠିପଡ଼ିଲେ । ସହଯାତ୍ରୀଙ୍କ ମନ୍ତବ୍ୟ ଥିଲା—ଏ ଅଭଦ୍ର ଭଦ୍ରମହିଳା ଶୋଇ ପଡ଼ିଥିବା ଅବସ୍ଥାରେ ସୁବିଧା ନେଇ ଅଶ୍ଳୀଳ ବ୍ୟବହାର ପାଇଁ ସାହସ କରିଛି । ତା'ପରେ ବସ୍‌ସାରା ସବୁଲୋକ ହିନ୍ଦି ମିଥ୍‌ର ରାମକୃଷ୍ଣଙ୍କ ଅବତାର ପାଲଟି ଗଲେ ଏବଂ ଦୁଷ୍ଟଦଳନ ଉଦ୍ଦେଶ୍ୟରେ ନିଜକୁ ପ୍ରସ୍ତୁତ କରିନେଲେ । ମୁଁ କେବଳ ଦର୍ଶକ ହୋଇ ରହିଗଲି ।

ମୁଁ ଅନେକ ସମୟରେ ସେହିନକୁ ଭାବେ ଓ ନିଜକୁ ଚିନ୍ତା କରେ ମୁକ୍ତି ଓ ସ୍ୱାଧୀନତାର ସମସ୍ତେ ସ୍ତବଗାନ କରନ୍ତି । କିନ୍ତୁ ସ୍ୱାଧୀନ ହେବାକୁ ମଣିଷ କେତେ ସତେ ଭୟ କରେ ?

॥ ତିନି ॥

ମୋ ନାଁ । ନଜରାନା । ମୋ ସ୍ୱାମୀ, ମୋ ଶହର ଦର୍ଶନର ଅଧ୍ୟାପକ । ସାଧାରଣ ଜୀବନରେ ସେ ଜଣେ ବୟସ୍କ ଶିଶୁ କହିଲେ ଚଳେ । ନିଜର ଚିନ୍ତାରେ ସବୁବେଳେ ମସଗୁଲ୍ ଥାଆନ୍ତି । ସମସ୍ତଙ୍କ ସାଙ୍ଗରେ ଅନ୍ୟମନସ୍କ ହୋଇ ଏମିତି ଖାପଛଡ଼ା କଥାବାର୍ତ୍ତା କରନ୍ତି ଯେ ସେ ଜଣେ ହୁଣ୍ଡା, ହାଉଡା ଶ୍ରେଣୀର ଲୋକ ବୋଲି ସମସ୍ତଙ୍କୁ ଧାରଣା ହଅନ୍ତି । ମୁଁ ବି ତାଙ୍କୁ ବେଳେବେଳେ ସେମିତି ଭାବେ ।

ମୁଁ ତାଙ୍କୁ ଭଲପାଏଁ ? ତାଙ୍କୁ ଭଲ ନ ପାଇ କେହି ରହିପାରିବେ ନାହିଁ । ମୁଁ ଠିକ୍ ଭାବରେ ନିଜକୁ ବ୍ୟବଚ୍ଛେଦ କରିପାରି ନାହିଁ । କରିବାକୁ ମୋର ଇଚ୍ଛା ହୁଏ ନାହିଁ । ମୋ ଭିତରେ ସଂଶୟ । ହଁ, ନାଁର ଲୁଚକାଳି ଖେଳ । ମୁଁ ଗୃହେଁ ସେମିତି ଥାଏଁ ଓ ମୋ ଭିତରେ ସେମିତି କଣ ହେଇକି ଥାଉ । ମୁଁ ତାଙ୍କୁ ପ୍ରେମ କରେ···ହୁଏତ ଦୟା କରେ ।

ମୋର ଶହର ସେମିନାର ସଭାସମିତି ସାରି ଅଧିକାଂଶ ଦିନରେ ରାତିରେ ଡେରିରେ ଫେରନ୍ତି । ମୁଁ ଏକୁଟିଆ ରହି କ୍ଳାନ୍ତ ହୋଇ ପଡ଼େ ।

ଘରେ ସେ ଖୁବ୍ କମ ସମୟ ରହନ୍ତି । ତାଙ୍କର ରହଣି ସମୟରେ ସେ ମତେ ଏମିତି କିଛି ଅନୁଭବ ଦେଇ ଯାଆନ୍ତି ନାହିଁ ଯେ ମୋ ମନକୁ ତାର ଗୃହକଡ଼ରେ ଘୂରାଇ ଘୂରାଇ ନିଜକୁ ନିୟୁକ୍ତ ରଖିପାରିବ । ତାଙ୍କ କଥାବାର୍ତ୍ତାରେ ତରକାରି ପତର, ଲୁଗାପଟା କାଚୁକଚ, ଘରଦ୍ୱାର ସଫା-ସୁତୁରା, ଏଇମିତି କିଛି କିଛି ବରାଦ ଥାଏ । ଅବଶ୍ୟ ଆଦେଶର ସ୍ୱର ନେଇ ସେ କିଛି କହନ୍ତି ନାହିଁ । ସବୁ କଥାରେ ଢ଼ୁଆଳିଆ ଅନୁରୋଧ ବା ଖୋସାମତିର ଭାଷା ନେଇ ତାଙ୍କର ଅଳ ମୋ ପାଖରେ ପେସ୍ କରନ୍ତି । ତାଙ୍କର ସବୁକାମ ମୁଁ ଜଣେ ମାଆର ମନ ନେଇ କରିଦିଏଁ । ମୋ ଭିତରେ ନାରୀର ଅନ୍ୟ ଏକ ଅନୁଭବ ବୋଧହୁଏ ମୋ ସହାନୁଭୂତି ହରାଇ ହାଇଁପାଇଁ ହୁଏ । କାରଣ ସେପରି ଚିନ୍ତାରେ କୌଣସି ନିର୍ଦ୍ଦିଷ୍ଟ ରୂପକୁ ମୁଣ୍ଡ ଟେକିବାକୁ ମୁଁ ସୁଯୋଗ ଦେଇପାରେ ନାହିଁ ।

ରିଜ୍‌ଓ୍ୱାନ୍ ଆମ ଘରକୁ ବେଳେ ବେଳେ ଆସେ । ସେ ମୋ ସ୍ୱାମୀଙ୍କର ସମ୍ପର୍କୀୟ ସାନ ଭାଇ । ପ୍ରାୟ ମୋ ବୟସର ହେବ । ଠିକିଏ ଠିକିଏ କଥାରେ ଏକ ନିଃଶବ୍ଦ ଅଳସର ହସ ତା ଓଠରେ ଆସ୍ତେ ଆସ୍ତେ ଲଟେଇ ଯାଏ । ଏ ପ୍ରକାର ହସ ପ୍ରତି ମୋର ଭୟଙ୍କର ଆସକ୍ତି । ଏ ହସର ନେପଥ୍ୟରେ ଅନେକ ଅନୁଭବ, ବହୁତ କଥା, କେତେନା କେତେ କବିତା ଚୁପଚାପ ଶୋଇ ରହିଥାଏ । ସେ ହସ ପାଖରେ ବେଳେବେଳେ ମୁଁ ନିଜକୁ ହରାଉ ହରାଉ ଫେରାଇ ଆଣେ । ଏ ଫେରେଇବାର ପାହାର ଯେ ମତେ ନ କାଟେ; ତା ନୁହେଁ । ରିଜ୍‌ଓ୍ୱାନର ହସ ଆଉ ମୋ ସ୍ୱାମୀଙ୍କର ହସ ଭିତରେ କେତେ ତଫାତ୍ । ମୋ ସ୍ୱାମୀ ତ ପ୍ରାୟ ଗମ୍ଭୀର ଥାଆନ୍ତି । ହଠାତ୍ ବେଳେ ବେଳେ କେମିତି ହସି ହସି ଘର ଫଟାଇ ଦିଅନ୍ତି । କାରଣ ପଚାରିଲେ, କେବଳ ଆହୁରି ଜୋର ହସରେ ତାର ଜବାବ ଦିଅନ୍ତି । ମୋ ଦେହସାରା ଛୁରି ଗଳିଯାଏ । ମୁଁ ପ୍ରାୟ ପଳାଇ ଯାଏ । ବୁଦ୍ଧୁ କେଉଁଠିକାର, ନିଜର ବୋକାମୀକୁ ହସି ହସି ହସରେ ଖଲାସ କରୁଛନ୍ତି । ମୁଁ ଚୁପଚାପ ଯାଇଁ ଏକୁଟିଆ ବସେ । ଆଃ ରିଜ୍‌ଓ୍ୱାନ୍‌ର ହସ । ତା ଓଠର ପାଖୁଡ଼ା ଭିତରେ କେତେ ସ୍ୱପ୍ନର ସ୍ୱାଦୁ ।

ଆମ ଘରକୁ ଆସି ମତେ ବେଳେବେଳେ ସଖ୍ୟ ଦେବାକୁ ସେ ବଡ଼ ଭାଇ ହିସାବରେ ରାଜ୍‌ଓ୍ୟାନକୁ ଆଦେଶ ଦିଅନ୍ତି । ମତେ କେମିତି ଆସ୍ୱସ୍ତି ଲାଗେ । କିନ୍ତୁ ସେ ନିର୍ବିକାର ଭାବରେ ରାଜଓ୍ୟାନ୍‌କୁ କହନ୍ତି— ଦେଖ୍, ମୋର ରାତିରେ ଆସିବାକୁ ଏମିତି ଡେରି ହୋଇଯାଉଛି । ତୁ ମଝିରେ ମଝିରେ ଆସି ଭାଉଜାନ୍‌ ସାଙ୍ଗରେ ଗପସପ କରିବୁ, ନ ହେଲେ କେରମ୍ ଖେଳାଖେଳି କରିବ, ବୁଝିଲୁ , ହଁ ।

ସେଦିନ ରାତିରେ ରାଜ୍‌ଓ୍ୟାନ୍‌ ସାଙ୍ଗରେ ମୁଁ କେରମ୍‌ ଖେଳୁ-ଥାଏ । ମୁହଁରେ ତାର ସେହି ସ୍ୱପ୍ନପ୍ରସୂ ଆବେଶସଂପୃକ୍ତ ହସ । ମୋ ହୃଦିଆରରେ ମୁଁ କଣେଇ କଣେଇ ଦେଖି ସେ ହସକୁ ସମ୍ଭୋଗ କରୁଥାଏ । କାହିଁକି କେଜାଣି ସିଧାସଳଖ ତା ମୁହଁକୁ ଚାହିଁବାକୁ ମତେ ଭୟ ଲାଗୁଥାଏ ।

ରାଜ୍‌ଓ୍ୟାନ୍‌ର ଷ୍ଟ୍ରାଇକର ସବୁବେଳେ ଲକ୍ଷ୍ୟଭ୍ରଷ୍ଟ ହେଉଥାଏ । ସେ ଗେମ୍‌ ପରେ ଗେମ୍‌ ହାରି ଯାଉଥାଏ । ପ୍ରଥମେ ପ୍ରଥମେ ମୋ ବିଜୟଗୁଡ଼ାକୁ ମୁଁ ଖେଳଓ୍ୟାଡ଼ର ଅହଂଭାବ ନେଇ ଉପଭୋଗ କରୁଥିଲି । ତାପରେ କେମିତି କେମିତି କାହିଁକି ମୋର ଭାରି ଇଚ୍ଛା ହେଲା, ମୁଁ ତା ପାଖରେ ହାରି ଯାଆନ୍ତି ?

ସ୍ୱାମୀ ମୋର ଡେରିରେ ଆସି ପହଞ୍ଚିଲେ । ରାଜ୍‌ଓ୍ୟାନକୁ ଘରେ ଦେଖି ଖୁବ୍ ଜୋରରେ ହସି ହସି ଗଡ଼ିଗଲେ । ଏ ନିର୍ମଳ ଆନନ୍ଦର ଖୋଲା ଖୋଲା ହସ । ଯାହାହେଉ, ନିଜସ୍ୱନାଷ୍ଟା ଏକୁଟିଆ ବଡ଼ ଛଟପଟ ହେଉ-ଥାନ୍ତା । ସେ ପ୍ରାୟ କୃତଜ୍ଞତାରେ ରାଜଓ୍ୟାନର ପିଠି ଥାପୁଡ଼ାଇବାକୁ ଲାଗିଲେ ।

ମୁଁ ଉପେକ୍ଷିତା ସ୍ୱାମୀ ସୋହାଗିନୀ ଘିରଣୀର ଅଭିନୟ କରି ଅଭିଯୋଗ ଅଜାଡ଼ି ଅଜାଡ଼ି ଖୁବ୍ ରାଗିଉଠିଲି । ସତେ ଯେମିତି ମୁଁ ତାଙ୍କୁ ଅପେକ୍ଷା କରି କରି କ୍ଳାନ୍ତ ହୋଇ ପଡ଼ିଛି । ସେ ଯେମିତି ମତେ ରାତି ଅନିଦ୍ରା ଦେଇ ମୋ ପ୍ରତି ଅବିଚାର କରିଛନ୍ତି ।

ସେ ଖୁବ୍ ଜୋରରେ ହୋ ହୋ ହୋଇ ହସୁଥାନ୍ତି । ମୁଁ ତ ରିଜ୍‌ଓ୍ୟାନ୍ ସାଙ୍ଗରେ ଥିଲାବେଳେ ଥରେ ବି ତାଙ୍କୁ ଭାବି ନାହିଁ । ମୁଁ ତ ଅନ୍ତତଃ କହିପାରିଥାନ୍ତି—ନା, ରିଜଓ୍ୟାନ ସାଙ୍ଗରେ ଖେଳାଖେଳି କରୁଥିଲି; ମୋର କିଛି ଅସୁବିଧା ହେଇ ନାହିଁ ।

କହିଲି ନାହିଁ କାହିଁକି ?



# ନେତାଜୀଙ୍କ ନିଦ୍ରା

ଆମ ଅନୁଷ୍ଠାନରେ ନେତାଜୀଙ୍କ ଜୟନ୍ତୀ ଉତ୍ସବ ଅଜସ୍ର ଆଗ୍ରହ ଓ ଅତ୍ୟଧିକ ଉତ୍କଣ୍ଠା ଭିତରେ ଜମି ଉଠିଥାଏ । ନେତାଜୀଙ୍କ ଅପୂର୍ବ ଦେଶପ୍ରୀତି ଓ ଅଭାବନୀୟ ତ୍ୟାଗକୁ କେନ୍ଦ୍ର କରି ବକ୍ତୃତାର ଅଗ୍ନିବୃଷ୍ଟି ହେଉଥାଏ । ଅନୁଷ୍ଠାନର ମୁଖ୍ୟ ନେତାଜୀଙ୍କ ସ୍ୱାଧୀନ ଚିନ୍ତା ଓ ବଳିଷ୍ଠ ସମ୍ମାନ ଚେତନାର ଉଦାହରଣ ଦେଉଁ ଦେଉଁ, ନେତାଜୀଙ୍କ ପିଲାଦିନର କାହାଣୀ କହୁଁ କହୁଁ, ନିଜେ ଭାବପ୍ରବଣ ହେଉଁ ହେଉଁ, ଆମ ଭିତରେ ଉନ୍ମାଦନାଗୁଡ଼ାକ ଭରୁଁ ଭରୁଁ କରାଉଥିଲେ ।

ଆମ ମୁଖ୍ୟଙ୍କର କନିଷ୍ଠା ବକ୍ତୃତା ବ୍ୟାଧି ରହିଛି । ଭାଷଣରେ ମୌସୁମ ଆସିଗଲେ ତାଙ୍କର କେତେକ ଉପସର୍ଗ ବାହାରେ । ଥରେ ଭାଷଣର ଶଗଡ଼ଗୁଳା ଭିତରେ ତାଙ୍କ ଚକ ଧୁସିଗଲା ତ ଅଖ ଭାଙ୍ଗିଲା ପର୍ଯ୍ୟନ୍ତ ସେ ଅସମ୍ଭାଳ ହୋଇ ଦୌଡ଼ିବେ ତ ଦୌଡ଼ିବେ ଆଉ ଆମେ ଅଧସ୍ତନ ବିଚରାଙ୍କୁ ତାଙ୍କ ଧାଇଁରେ ଘୋଷାରି ଘୋଷାରି ଆମ ସୁରୁଆ ନିକାଲି ଦେବେ । ସେ ମଞ୍ଚ ଉପରୁ ଆମ ମୁହଁ ଉପରେ ସବୁବେଳେ ସତର୍କ ଦୃଷ୍ଟି ଦେଇଥିବେ । ସେ ହସିଲେ ତ ଆମେ ହସିବୁ । ସେ ଆସିଲେ ତ ଆମେ ଆସିବୁ ସେ ମାଡ଼ିଲେ ତ ଆମେ ମାଡ଼ିବୁ, ସେ ତାଡ଼ିଲେ ତ ଆମେ ତାଡ଼ିବୁ ଆଉ ତାଙ୍କ ବକ୍ତୃତାର ଶେଷ ପହରରେ ମସଲ ସରିଗଲେ ସେ ଯେତେବେଳେ ହେମାଳ ହୋଇଯିବେ, ଆମେ ସବୁ ଅଣ୍ଡା ଧରିଯିବୁ । ଭାଷଣ ମଞ୍ଚରୁ ଓହ୍ଲାଇ ଆସି ତାଙ୍କର ଝାଳଘଷା ପୈତୃକ ଗ୍ରେଟ କୋଟ ଖଣ୍ଡକ ଟାଣି ପକାଇ ଆମ ଆଡ଼କୁ ଫୋପାଡ଼ ଦେବେ । ଆଉ ସେଇଟା ହେଲା ଆମର ଅସଲ ପରୀକ୍ଷାର ବକତ । ଆମ ଭିତରୁ ଆଗ ଜଣେ ଝାମ୍ପମାରି କୋଟକୁ ଲୋଟି ନେଉଛି । ତାପରେ ସେ ନିଜକୁ ଟିକିଏ ହୁଗୁଳାଇ ଦେଇ ଆମମାନଙ୍କ ଗହଣରେ ଦୋଳଗୋବିନ୍ଦଙ୍କ ପରି ବସି ପଞ୍ଝେଇ ହେବେ । ଆମେ ଚାମଚ ଶ୍ରେଣୀୟ ତାଙ୍କର ଅତି ବିଶ୍ୱସ୍ତ ଅଧସ୍ତନବର୍ଗ ତାଙ୍କ ଦେହ ଖଟୁଲିକୁ ଦୋହଲିବାକୁ ସାଙ୍ଗେ ସାଙ୍ଗେ ଆଡ଼େଇ ଯାଇ ଜାଗା ଫାଙ୍କା

କରିବାକୁ ତତ୍ପର ହୋଇ ପଡ଼ନ୍ତୁ । ତାପରେ ସ୍ୱାଭାବିକ ସାମାନ୍ୟ ହସ୍ତପ୍ରସାର ସଙ୍କେତରେ ମାଡ଼ଖିଆ ଶତ୍ରୁପକ୍ଷ ଭଳି ପଳାଇଗଲା ଆମର ବିମାନ ପାନ କେତେ ଖଣ୍ଡକୁ ପାଛି ଓ ପକେଟ୍ କଲେମାନଙ୍କରେ ଆଇଥାନ କରି ଦେଇ ତାଙ୍କ ଟିଉଟୋରିଏଲ୍ କ୍ଲାସ ଆରମ୍ଭ କରିଦେବେ । ତାଙ୍କ ନିଅର୍ଥିତ ଭାଷଣସ୍ଥ ଭାବର ବାଧୁଆଣ୍ଡିମାନଙ୍କ ଉପରେ ତାଙ୍କ କୃତ ପାଦଟୀକାକୁ ଆମ ଭଳି ଅର୍ଷିତ ଭଣ୍ଡାମାନଙ୍କ ଆଗରେ ବଖାଣି ବସିବେ । ତାଙ୍କର ମଞ୍ଚରୁ ଗଡ଼ିବା ପରେ ମଞ୍ଚ ଉପରକୁ ଆଉ କିଏ ଚଢିଲା, କଣ ରଡ଼ିଲା, କେତେବେଳେ ମଞ୍ଚ ଛାଡ଼ିଲା, କିଛି ଶୁଣିବାକୁ, ଜାଣିବାକୁ ଆମକୁ ଫୁରୁସତ ଦେଉନଥିବେ ।

ତାଙ୍କ ଭାଷଣ ସମ୍ପର୍କରେ ସବୁଠୁଁ ବଡ଼ ଜାଣିବା ଘଟଣା ହେଲା ପରିସ୍ଥିତିକୁ ସୁହାଇଲା ଭଳି ଦୁନିଆର ବଡ଼ ବଡ଼ ଲୋକଙ୍କ ଉପରେ ବେପରୁଆ କମ୍ପୁଟକମାକାର କାହାଣୀ ସବୁ କଏନ୍ କରିପକାନ୍ତି । ସେ ନିଶ୍ଚିତ ଥାନ୍ତି ଯେ ସେ ଧରା ପଡ଼ିବେନି । ଆମେ ବି ନିଶ୍ଚୟ କରିଥାଉଁ ଯେ ତାଙ୍କୁ କେହି ଧରା ପକାଇଦେବୁନି । ପରିସ୍ଥିତି ସବୁବେଳେ ତାଙ୍କ ସପକ୍ଷରେ ଛିଡ଼ା ହୋଇଥାଏ । କାରଣ ସେ ନିଜ ଅନୁଷ୍ଠାନର ଉତ୍ସବ ଛଡ଼ା ଅନ୍ୟ କେଉଁଠି କେବେ ଭାଷଣ ଦେବାକୁ ପସନ୍ଦ କରନ୍ତିନି ।

ହଁ, ଆମ ମୁଖ୍ୟ ନେତାଜୀଙ୍କ ପିଲାଦିନ ବର୍ଣ୍ଣନା କରୁଁ କରୁଁ କହିଲେ ଯେ ଥରେ ନେତାଜୀଙ୍କ ଶ୍ରେଣୀର ଜଣେ ନିରୀହ ପିଲାକୁ ଉପର ଶ୍ରେଣୀର ଗୋଟାଏ ପିଲା ମାରିଲା । ନେତାଜୀ କେମିତି ସେ ପିଲାକୁ ଶ୍ରେଣୀରୁ ଟାଣି-ଆଣି ତାଙ୍କ ଶ୍ରେଣୀର ସବୁ ପିଲାଙ୍କ ଯୋଡାରେ ତାଙ୍କୁ ପାହାରେ ଲେଖା ଚଟେଇ ଦେଲେ । ଆଉ ଥରେ ଫୁଟବଲ୍ ମ୍ୟାଚ୍‌ର ରେଫରୀଙ୍କ ପକ୍ଷପାତ ବିଚାର ଯୋଗୁଁ ସେ କିପରି ଉତ୍କ୍ଷିପ୍ତ ହୋଇ ବଲ୍‌ରୁ ବ୍ଲାଡର୍ ଟାଣି ସେଥିରେ ରେଫରୀକୁ ପିଟି ପିଟି ସାବାଡ଼୍ କରିଦେଲେ । ଏପରି ଦୃଷ୍ଟାନ୍ତ ମାନଙ୍କରେ ଶ୍ରୋତାଙ୍କୁ ବାନ୍ଧିଆଇ ନ ରଖିଲେ ନିଜକୁ ଦେଶ ପାଇଁ ସମର୍ପିତ କରି ହୁଏନି । ବଞ୍ଚିତକୁ ବଞ୍ଚିବାକୁ ହେଲେ, ତାର ଲୁଣ୍ଠିତ ବାଞ୍ଛାକୁ, ତାର ଲାଞ୍ଛିତ ପ୍ରୟାସକୁ ଜୀବନ୍ୟାସ ଦେବାକୁ ଗଲେ ତାକୁ ପ୍ରଥମେ ଅହଂବାଦର ବଳିଷ୍ଠ ବଳୟ ତଳେ ଉଦ୍ଦୀପ୍ତ ହେବାକୁ ପଡ଼ିବ । ଆମ ମୁଖ୍ୟଙ୍କ ଭାଷା ଓ

ଘଟନାର ବର୍ଣ୍ଣାଢ୍ୟ ଅଭିଭାଷଣ ମତେ ସେଦିନ ସତେ ଅଭିଭୂତ କରି ପକାଇଥିଲା ।

ସଭାକାର୍ଯ୍ୟ ପରେ ପରିଚର୍ଯ୍ୟାର କାର୍ଯ୍ୟସୂଚୀ ଆରମ୍ଭ ହେଲା । ସଭାର ସାର୍ଥକତା ସବୁବେଳେ ତାର ପରବର୍ତ୍ତୀ ପ୍ଲେଟ୍, ପତରରେ ଗାମ୍ଭୀର୍ଯ୍ୟକୁ ଅପେକ୍ଷା କରେ । ସଭାକୁ ଆସିବାର ମଜୁରି ସଭା ଶେଷରେ ହାତପାଟି କରିଆରେ ଦେଣନେଣ ହୁଏ । ଆମେ ସମସ୍ତେ ତତ୍ପର ହୋଇ ଆସନ ଧରିନେଲୁ ମୁଖ୍ୟଙ୍କ ମୁହାଁମୁହିଁ ଆସନରେ ବସିବାକୁ ଚେଷ୍ଟାକରି ବସି ବି ପାରିଲି । ତାଙ୍କର ଭାଷଣରେ ଉତ୍ତେଜନା ମତେ ତାଙ୍କ ପ୍ରତି ଅତିମାତ୍ରାରେ ଅନୁଗତ କରି ପକାଇଥିଲା । ତାଙ୍କର ସାନ୍ନିଧ୍ୟ ମତେ ଆତ୍ମପ୍ରସାଦ ଦେଉଥିଲା । ତାଙ୍କ ଭାଷଣସ୍ଥ ଆତ୍ମସମ୍ମାନର ଅନୁଚିନ୍ତା ମୋ ଭିତରେ ଅନୁରଣିତ ହେଉଥିଲା ।

ତା ପରେ ସମସ୍ତଙ୍କ ଆଗରେ ପ୍ଲେଟଗୁଡ଼ିକ ଲାଳସାରେ ରଞ୍ଜିତ-କରି ଥୋଇ ଦିଆଗଲା । ସାମଗ୍ରୀ ସବୁ ତାପର ତାପରେ ହୋଇ ଆସିଲା । ସମସ୍ତେ ଆସିଗଲାକୁ ଶେଷକରି ଆହୁରି ଆସିବାକୁ ନୀରବ, ସରବ ଆହ୍ୱାନ ଦେବାକୁ ଲାଗିଲେ । ମୁଁ କିନ୍ତୁ ପ୍ଲେଟଶୂନ୍ୟ ଅବସ୍ଥାରେ ଶିଶୁପାଳ ଭଳି ବସି ଛେପ ଢୋକୁଥାଏ । ମତେ ପରଶିବାକୁ ପରିଚର୍ଯ୍ୟାର ନାୟକ ପାଶୋରି ପକାଇଥିଲେ ।

ସେତେବେଳେ ମୁଁ ଉତ୍ତେଜନାରେ ନିଜଠିଁ ରଞ୍ଜକ ଲଗାଇ ଉତ୍କ୍ଷିପ୍ତ ହୋଇ ପଡ଼ିଥିଲି । କିଛିଦିନ ପରେ ଅବଶ୍ୟ ଦୁର୍ଘଟଣାକୁ ବ୍ୟବଚ୍ଛେଦ କରି ମନନ ଓ ମନ୍ତବ୍ୟ ମାଧ୍ୟମରେ ମୁଁ ସମର୍ଥି ଯାଇଥିଲି ଯେ ପରିବେଷଣକାରୀ ମୋଠିଁ ନ ପରଶି କିଛି ଭୁଲ କରି ନାହାନ୍ତି । ସବୁଠି ମାଲିକଙ୍କ ଖାତିର ପାଇଁରେ ମୂଲଆର ମର୍ଯ୍ୟାଦା ଉଜଳ ହୁଏ । ଆମ ମୁଖ୍ୟଙ୍କ ଖାତିର କିଣିବା ପାଇଁ ମୋ ପାଖରେ ସମ୍ବଳ ନ ଥିଲା । ଥରେ ହେଲେ ବି ଅତି ନିକୁଛରେ ତାଙ୍କ ହାଟ· ସୌଦାଠା ହାତରୁ ଖର୍ଚ୍ଚ କରି ତାଙ୍କ ଘରେ ପହଞ୍ଚାଇବାକୁ ମୋ ପାଖରେ ପୁଞ୍ଜି ହୋଇ ପାରୁ ନ ଥିଲା । ମାଙ୍କଡ଼ଙ୍କ ଡଙ୍କମୋଡ଼ା ଦୌରାତ୍ମ୍ୟ କବଳରୁ କଦବାଏ କେମିତି ଜାଣ୍ଟି ପାଇଥିବା ଆମ ବାଡ଼ିର କଖାରୁ କଷିଠାଏ,କି ବେକ ଭଙ୍ଗା କଦଳୀ କାନ୍ଧିରୁ

ପିଚିକି ପଡ଼ିଥିବା ଦରଖଣ୍ଡିଆ କଦଳୀର ଭଗ୍ନାବଶେଷ କେଇଟା ଆମ ଅଭାବ ଦଳିତ ପରିବାରର ଉପକୂଳରେ ସବୁବେଳେ ତତ୍‌କ୍ଷଣାତ୍ ଖଲାସ ହୋଇ ଯାଉଥିଲା । ମୋ ଫାଙ୍କା ବୋତଲକୁ ନେଇ ତାଙ୍କ ଦାଣ୍ଡଦୁଆରେ ଲଗାଇଲେ ମୁଁ ସାଧବ ପୁଅର ମହତ୍ତ୍ୱ ଏ ଜମାନାରେ ପାଇବନି ବୋଲି, ମୁଁ ନ ଜାଣିବା ମାନେ ମୋର ବୋକାମି ହୋଇଥାନ୍ତା । ତେଣୁ ମୁଁ କେବେ ସେଠିକି ଯାଉ ନ ଥିଲି । ମୁଖ୍ୟଙ୍କ ସ୍ତ୍ରୀଙ୍କ ବଦ୍ଧନରୁ ମୋ ଅଶିଷ୍ଟ ଉପରେ ଅଳ୍ପ ବହୁତ ମିଠା କଡ଼ା ମନ୍ତବ୍ୟ ଖାତିରପ୍ରାପ୍ତ ମୋର ସହକର୍ମୀଙ୍କ ଜରିଆରେ ମୋ ପାଖରେ ବଳେ ବଳେ ପହଞ୍ଚିଲେ ମଧ୍ୟ ମୁଁ ବିଚରା ନାଁଗୁର ଥିଲି । ଏଣୁ ବେଖାତିରର ବୋକଣ୍ଟ ମୁଣ୍ଡରେ ଲଦି ମୋ ଗୃହିଣୀ ଧନାରେ ଯେତେ ଧନ୍ଦି ହେଲେ ବି ମୋ ସି: ସି: ଆର୍‌ରେ ମୁଁ ମାନ୍ଦା ଶ୍ରେଣୀୟ ବୋଲି ପ୍ରାପ୍ତ ମନ୍ତବ୍ୟ ରହୁଥିଲା । ଅନ୍ତଃସଲିଳା ନଈର ଚଚଲ ବାଲି ଉପରେ କୁଦି କୁଦି ମୁଁ ବେହାଲ ହୋଇ ଯାଉଥିଲି । ମୁଁ ତ କହୁଛି, ବାଲି ତାଡ଼ି ସୁବିଧା ସୁଯୋଗର ପାଣି କାଢ଼ିବାକୁ ମୋ ହାତରେ ହତିଆର ନ ଥିଲା । ହାଲି ଜମାନାରେ ମୁଁ ଗୋଟାଏ କପଟ ଓଲୁ ଥିଲି । ଓ୍ୟାନ ଇଜ୍ ନେଭର୍ ସିନ୍‌ସିଆର୍ ଅନ୍‌ଲେସ୍ ହି ଇଜ୍ ଏ ଫୁଲ୍—ଅର୍ଥାତ ଗଧହିଁ କେବଳ ବୋଝ ବୁହନ୍ତି ବୋଲି ଜମାନାର ଚେତାବନୀ ମୁଁ ଅଧମ ହୃଦୟଙ୍ଗମ କରି ବି କରି ପାରୁ ନ ଥିଲି । ଗଧର ପରିଓ୍ୟାନା ଧରିଥିଲି, କିନ୍ତୁ ଗଧଙ୍କୁ ବରଦାସ୍ତ କରିପାରୁ ନ ଥିଲି । କଥାଟା କଣ କି, ମୋ ଭଳି ଜଣେ ଗଧ ସମ୍ପ୍ରଦାୟର କାର୍ତ୍ତିକିୟାଙ୍କୁ ଯେ ଖାଇବାକୁ ଦେବା ପରିବେଷଣକାରୀ ଭୁଲିଗଲେ, ଏଟା ତାଙ୍କର ଭୁଲ ବୋଲି କହିବା ଭଲ ନୁହେଁ । ଏକଥା ମୋ ଭିତରେ ଧସ୍ତା ଧସ୍ତି କରି ମୁଁ ପରେ ସେ ଦିନକାର ଉପପାଦ୍ୟର୍-ସମାଧାନ କରିଥିଲି ।

କିନ୍ତୁ ସେଦିନ ସେତେବେଳେ ମୁଁ ଗରମ ମିଜାଜ ନେଇ ବୁଝି ନେଇଥିଲି ଯେ ମୁଁ ଜଣେ ନିମନ୍ତ୍ରିତ ଅତିଥି । ତା'ଛଡ଼ା ଉତ୍ସବରେ ଆୟୋଜନରେ ବିନା ମଜୁରିରେ ମଜୁରିଆର ଭୂମିକା ନେଇ ଅଖିଆ ଅପିଆ ମୁଖ୍ୟ ତଥା ତାଙ୍କ ପାଖଲଗାଙ୍କ ହୁକୁମ ତାଲିମ କରି ଯଥେଷ୍ଟ ପରିଶ୍ରମ ଦେଇଥିଲି । ଖାଇବା ମୋର ଦରକାର ଥିଲା । ମୁଁ ଭାବି ନେଇଥିଲି ଖାଇବା ମଧ୍ୟ ମୋର ଦାବୀ ଥିଲା । ପରିବେଷଣ ଦ୍ୱିତୀୟ ପର୍ବ ଆରମ୍ଭ ହୋଇ ଶେଷ ହେଲା । ମୁଁ ମୋର ଶୂନ୍ୟ ପ୍ଲେଟକୁ ଓ ସମସ୍ତଙ୍କୁ ଓଲଟ ପାଲଟ କରି

ଦେଖୁଥିଲି । ଖାଇବାରେ ସମସ୍ତେ ମନ୍ତ୍ରବଦ୍ଧ ମତେ ଗୃହିଁବାକୁ କା'ର ଫୁରୁସତ୍ ନ ଥିଲା । ଅବହେଳାର ଉତ୍କଟ ଅନୁଭବ ନେଇ ମୋ ଉପରେ ମୁଁ ଦାନ୍ତ ଚଳାଉଥିଲି । ହଠାତ୍ ପରିବେଷଣରେ ତତ୍ତ୍ୱାବଧାରକ ନଜର ଏକ ଅକ୍ଷମଣୀୟ ଅପରାଧ ପାଇଁ ଅତି ମାତ୍ରାରେ କାକୁସ୍ଥ ହୋଇ ପଡ଼ିଲେ । ଦୁଆର ସେ ପାଖରେ ମୁଖ୍ୟଙ୍କ ଜଣେ ଆତ୍ମୀୟ ଠିଆ ହୋଇଥିଲେ । ନିମନ୍ତ୍ରଣ ହେବା ପାଇବା ପାଇଁ ତାଙ୍କର ଯୋଗ୍ୟତା ନ ଥିଲା । ସେ ବି ନିମନ୍ତ୍ରିତ ହୋଇ ନ ଥିଲେ ମଧ୍ୟ ମୁଖ୍ୟଙ୍କ ଘର ମଣିଷ ଥିବାରୁ ଉତ୍ସବେଟା ତାଙ୍କ ଘର କଥା ଭାବି ଆସି ଯାଇଥିଲେ । ବଡ଼ ବିନୀତ ଓ ବିଚଳିତ ଅବସ୍ଥାରେ ନିଜର ଅପରାଧ ମାର୍ଜନା ପାଇଁ ତତ୍ତ୍ୱାବଧାରକ ତାଙ୍କ ପାଖରେ ଅନୁନୟ କଲେ । ସେ ଏତେ ନିଜନ ହୋଇ ନିଜଗ୍ଳାନି କଲେ ଯେ ଆତ୍ମୀୟଙ୍କଠାରେ ଆପେ ଆପେ ଯଥେଷ୍ଟ ଅଭିମାନ ଜମିଗଲା । ଅତି ବେଶୀ ଖୁସାମଦ ଖାଇ ଖାଇ ତାଙ୍କ ସମ୍ମାନ ଚେତନା ଟୋପିଲେଇ ତାଙ୍କ ଅଜଣାରେ ଓଜନିଆ ହୋଇ ପଡ଼ିଲା ଏବଂ ସେ ଖାଇବାକୁ ବେଶୀ ବେଶୀ ଅମଙ୍ଗ ହେଲେ । ତାପରେ ସମସ୍ତ କର୍ମଚାରୀଙ୍କ ସମବେତ ଖୁସାମଦ, ଅତୁରତା, ଟେଣ୍ଟିଙ୍କା ଫଳରେ ଶ୍ରେଷ୍ଠ-ମନ୍ୟ ଆତ୍ମୀୟ ମହୋଦୟ ଆସନ ଧରିଲେ । ବସ୍ତୁ ବସ୍ତୁ ଖାଇବା ସାମଗ୍ରୀ ତାଙ୍କ ପେଟ ଉପରେ ଆଷାଢ଼ ମାସର ଅନାଧୁନିଆ ବର୍ଷା ପରି କୁଢ଼େଇ ହୋଇ ପଡ଼ିଲା । ଏହି ସରଗରମ ପରିପୂର୍ଣ୍ଣତା ଭିତରେ ତଥାପି ମୋ ଶୂନ୍ୟ ପ୍ଲେଟ ଆଗରେ ମୋତେ ବସାଇ ଏକ ଦୟନୀୟ ଧ୍ୟାନ ଦର୍ଶକର ଅଭିନୟ କରିବାକୁ ମତେ ସମସ୍ତେ ଛାଡ଼ି ଦେଇଥିଲେ । ହସ ଓ ରସର ପରିସର ଭିତରେ ସମସ୍ତେ ମସ୍‌ଗୁଲ ଥିଲେ । ମୋ ଶୁଖିଲା ସ୍ନାୟୁମାନଙ୍କ ଉପରେ ମୋର ସମ୍ମାନବୋଧର ମଁଶାଲ ଧୂର ଧୂର ନିଆଁ ଧରାଇ ଦେଲା । ମୁଁ ହଠାତ୍ ଜଳି ଉଠିଲି । ମୋର ସ୍ପର୍ଶ ଦ୍ରବଣ ପ୍ରାଣ ଭିତରେ ନେତାଜୀଙ୍କ ସମ୍ମାନ-ଚେତନା ଗର୍ଜି ଉଠିଲା । ମୁଁ ଅଦମ୍ମାନର ଦ୍ରୁତବାଦ ଜଣାଇ ମୋର ଖାଲି ପ୍ଲେଟଟାକୁ ଟେଲି କଗୃଡ଼ ଦେଇ ଉଠି ପଡ଼ିଲି । ଆତ୍ମୀୟ, ବିଶେଷ ମୋର ମୁହାଁମୁହିଁ ଆକ୍ଷେପକୁ ବରଦାସ୍ତ କରି ନ ପାରି ଖାଇବା ଛାଡ଼ି ଉଠି ପଡ଼ିଲେ । ମୁଖ୍ୟ ବି ଆସନ ଛାଡ଼ିଲେ । ଅନ୍ୟମାନେ ଆସନ ଛାଡ଼ିବାକୁ ଇଚ୍ଛା ନ ଥିଲେ ବି ବାଧ୍ୟ ହେଲେ । ଏ ଦୁର୍ଘଟଣା ପରେ ମୋର ସହକର୍ମୀ ବନ୍ଧୁମାନେ ମୋର ଆଗାମୀ ଦୁର୍ଗତି ପାଇଁ ପ୍ରମାଦ ଗଣିଲେ । ଗଧ ପାଇଁ କାହାରି ସମ୍ମାନ

ବା ସେବା ନ ଥାଏ । କିନ୍ତୁ ତାଙ୍କୁ ଦରଦ ଓ ଦୟା ଦେଲେ ଅହଂବାଦ ଚରିତାର୍ଥ ହୁଏ । ମୋର ଏବଂବିଧ ଉଚ୍ଛୃଙ୍ଖଳତା ଓ ସୀମାତୀତ ଅଶିଷ୍ଟତା ପାଇଁ ବହୁ ଭର୍ତ୍ସନାର କଣ୍ଟାଗୋଛ ମୋ ଉପରେ ଲଦି ଦିଆଗଲା । ମୋର ଶ୍ଵପଦଭଞ୍ଜନ ପାଇଁ ବହୁ ମନ୍ତ୍ରଣା ଯନ୍ତ୍ରଣା ପରେ ସମସ୍ତେ ଆମ୍ନୀୟଙ୍କ ସମୀପସ୍ଥ ହୋଇ ସମବେତ ପ୍ରାର୍ଥନାର କୋରସ୍ ଗାଇଲେ । ମୋ ପରି ଅର୍ବାଚିନ, ଅକଅଜନକୁ ଦୟା ଦେଖାଇବା ପାଇଁ ମୁଖ୍ୟଙ୍କୁ ଯୀଶୁ, ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ଦେଇ କ୍ଷମାଶୀଳ ହେବାକୁ ତାଙ୍କ ଇକଲସର କ୍ଷୀରସିନ୍ଧୁ ତୀରରେ ଧାରଣା ଦେଲେ ।

ମୁଖ୍ୟଙ୍କ ଆମ୍ନୀୟ ଆସିଲେ । ମୁଖ୍ୟ ବି ଆସିବା ହେଲେ । ଅନ୍ୟମାନେ ବସିଲେ ବନ୍ଧୁମାନଙ୍କ ମିଟିଂ ଶୁଣି ମୁଁ କ୍ଷମା ଭିକ୍ଷାର ଉପକ୍ରମ କରିବା ଆଗରୁ ବନ୍ଧୁମାନେ ମୋ ତରଫରୁ କ୍ଷମା ଭିକ୍ଷାର ପ୍ରସ୍ତାବ ଉପସ୍ଥାପିତ କଲେ ଏବଂ ଗୃହୀତ କରାଇ ନେଲେ । ବନ୍ଧୁମାନେ ଆଶ୍ୱସ୍ତ ହେଲେ । ମୁଁ ସେମାନଙ୍କ ପାଖରେ ଋଣୀ ବୋଲି ଧରି ନେଲି ମୋର କୃତଜ୍ଞତା ଆପେ ଆପେ ପରିଷ୍କୁଟ କରି ଦିଆଯାଇ ଅଧିବେଶନର ଖର୍ଚ୍ଚ ପାଇଁ ମୋ ତରଫରୁ ଋଣ ନେଲେ । (ପରେ ଅବଶ୍ୟ ଦରମା ପାଇଲା ପରେ ମୁଁ ତାଙ୍କୁ ଶୁଝି ନ ଥିଲି । ସେମାନେ ଜବରଦସ୍ତ ମୋ ବେତନରୁ କିସ୍ତି କରିଆରେ କାଟି ନେଇଥିଲେ) ସେତେବେଳେ ମୁଁ କିଛି କହୁ ନଥିଲି । ମୋ ମୁହଁକୁ ବନ୍ଦ କରାଯାଇଥିଲା । ତାପରେ କହିବା ଅବସ୍ଥାରେ ନ ଥିଲି ।

ତାପରେ ପୁଣି ପରିଚର୍ଯ୍ୟାର ନୂତନ ପ୍ରସ୍ଥା ଆରମ୍ଭ ହେଲା । ମୋ ପାଖରେ ଏଥର ଅବଶ୍ୟ କିଛି ଥୁଆଗଲା । ପ୍ଲେଟର ଖାଦ୍ୟ ଦେଖିକରି ମୁଁ ଖାଲି ଦୟାର ଗନ୍ଧ ଶୁଂଘୁଥିଲି । ମୋ ଜୀବନର ମଞ୍ଚ ଉପରୁ ସମ୍ମାନବାଦର ବିପ୍ଳବୀ ପ୍ରଭୃତି ନେତାଜୀ ବକ୍ତୃତାର ଭାଷଣ ମଞ୍ଚକୁ ଘୁଞ୍ଚି ଘୁଞ୍ଚି ଯାଉଥିଲେ । ମୋର ପରିବାର ବଞ୍ଚିବାର ଏକମାତ୍ର ସମ୍ବଳ ଛୁଣ୍ଡା ବୁଦ୍ଧିକଣି କାନ୍ଥାର ଘେର ଭିତରେ କାଠର ନେତାଜୀ କଣ୍ଢେଇକୁ ଲୁଣ୍ଠାଇ ମୁଁ ନାନା ବାଇଆ ଗୀତ ଗାଇବାକୁ ତର୍ଣ୍ଣି କଣ୍ଠରେ ଚେଷ୍ଟା କରୁଥିଲି ।



# ବ୍ୟର୍ଥ [illegible]ଧାରା

ଥିଲା ତାଙ୍କର ଅନନ୍ତ ଭାବନା ଓ ଥିଲେ ଅନାଦି ଭଗବାନ ।

ଅତଳ ଅସୀମ କଳ୍ପନା ସମୁଦ୍ର ଥିଲା ନୀରବ ନିସ୍ତରଙ୍ଗ । ସ୍ପନ୍ଦନହୀନ ଭାବନା ବାରିଧି ହଠାତ୍ ଉଦ୍‌ବେଳ ଉଠିଲା । ସୀମାହୀନ ଶୂନ୍ୟ ସାଗରରେ ବାଜିଲା ଗୋଟିଏ ଧକ୍‌କା । ଅସୀମର ପରିସର ଭିତରେ ସସୀମ ରୂପପାତର ପ୍ରୟାସ । ଗୋଟାଏ ଆକାଂକ୍ଷା । କିଛି ଗୋଟିଏ ଅକାରର ସ୍ୱରୂପ । ଅଜସ୍ର ନିରୁଦ୍‌ବେଗ, ଅନେକ ନିମଗ୍ନତା ପରେ କିଛି ଗୋଟେ କରିବାର ଉଦ୍ଦୀପନା । ସକଳ ସବଳ ନିର୍ଲିପ୍ତତାକୁ ଦୋହଲାଇ ଦେଇ ଦୁର୍ବଳତାର ଏକ ପ୍ରବଳ ଉଦ୍‌ବେଳନ । ସୃଷ୍ଟି, ସର୍ଜନା, ନିରାକାରର ଆକାର କଳ୍ପନା ।

ସମୁଦ୍ର ଗହ୍ୱର ଆନ୍ଦୋଳନ କୂଳ ବେଳାରେ ଦେଲା ପ୍ରଥମ ତରଙ୍ଗର ଆଘାତ । ଲହଡ଼ି ଆପେ ଆପେ ଲେଉଟି ଆସିଲା ପ୍ରତିଘାତ ଫଳରେ ସାଗରର ମୁଣ୍ଡଟେକିଲା ବିକ୍ଷିପ୍ତ ଆଲୋଡ଼ନ । ସୃଷ୍ଟିର ଲିପ୍ସା ସନ୍ଦିପ୍ତ ହୋଇ ଉଠିଲା । ଅନାଦି ଅରୂପ ଆଦିର ସୂତ୍ରପାତ କରି ରୂପର ସଂସ୍କାର ପାଇଁ ତତ୍ପର ହୋଇ ପଡ଼ିଲେ । ତୂଳୀରେ ତାଙ୍କର ଗୁମରି ଉଠିଲା ଅପରୂପ ସୃଜନର ଆମୋଦ୍ଦ ମାଦକତା ।

ବିଶାଳ ଧରଣୀର ରୂପରେଖ ପରେ ଉପରେ ପାରିଦେଲେ ତାର ବହଳ ନୀଳ ଚନ୍ଦ୍ରାତପ । ସୁଷମ ଆକାଶ । ଆବୃତ ଧରଣୀ ଅନ୍ଧକାରରେ ଅସ୍ପଷ୍ଟ ହୋଇ ଉଠିଲା । ପୂର୍ବ ଦିଗ୍‌ବଳୟ ତଳେ ତୂଳୀକାର ପରାକାଷ୍ଠା ରଚାଇ ଉଦ୍ଭାସି ଉଠିଲା ସୁନ୍ଦର ସୂର୍ଯ୍ୟ । ସନ୍ଧ୍ୟା ଆସିଲା । ପଶ୍ଚିମାଶାର ପଶ୍ଚାଦ୍‌ଦେଶରେ ଉଜ୍ଜ୍ୱଳ ସୂର୍ଯ୍ୟ ଯେ ସମ୍ପୂର୍ଣ୍ଣ ନିଷ୍ପ୍ରଭ । ପୁଣି ଯେ ନିବିଡ଼ ଅନ୍ଧକାର ଘୋଟି ଆସିଛି । ଆକାଶ ଗହ୍ୱରରେ ଖଂକାରିଦେଲେ ସ୍ନିଗ୍ଧ, ଶୁଭ୍ର, ଶୋଭାମୟ ଚନ୍ଦ୍ର । ହାୟ, ତାର ବି କ୍ଷୟ ଆସିଲା । ଦୁର୍ଦ୍ଧଶ ଅନ୍ଧକାର ପୁଣି ଧରଣୀ ଉପରେ ଆକ୍ରମଣ କରିଛି । ସର୍ବଶକ୍ତିମାନ୍ ସ୍ରଷ୍ଟା ସେ । ଏ ଅଭିଯାନ ବିରୁଦ୍ଧରେ ସଚେତ ତୂଳୀ ତାଙ୍କର ଶତ ସଙ୍କେତ ଦେଇ

ଚର୍ଚ୍ଚି ଗଲ୍ ଅତୁଳ କୋଟି କୋଟି କମମ୍ରାୟ୍ଣ ତାରକା । ତଥାପି ଅନ୍ଧକାର ପରାଜୟ୍ ନେଉନ ।

ବନ୍ଧୁର ଧରଣୀ ଉପରେ କୋମଳତାର ଆସ୍ତରଣ ଆରୋପି ଧୀରେ, ଅତି ଧୀରେ ଦେଲେ ସେ ସ୍ନିଗ୍ଧ, ସଜଳ ଦୂର୍ବାଦଳର ସବୁଜ ସଂଗୃଜ । ରୂପମୟ୍ ଅନ୍ତର ତୂଳୀର ଚଳନ ଦେଇ ମାଟିର ପିଠି ଉପରକୁ ତରଳ ଆସିଲା । ପତର ସନ୍ଧିରେ ଦେଲେ ଲକ୍ଷ ଫୁଟନ୍ତ ଫୁଲର ଆଶ୍ରୟ । ମନ ମାନିଲାନ··· । ତାପରେ ସେଥିରେ ସମାବେଶ କଲେ ଟହ ଟହ କେଶର, ମହ ମହ ସୁବାସ । ତଥାପି ନୁହେଁ··· । ଭାବନା ଆଗେଇ ଗ୍ଲଲା, କଳା କଳା ଅଳି ଦଳର ଛଳ ଛଳ ଗୁଞ୍ଜନ ଯେତେବେଳ ଯାଏଁ ଫୁଲର କଅଁଳ ଗାଲରେ ଗୋଟାଏ ମତାଣିଆ ମହୁଲ ଆବେଶ ଲେସି ନଦେଇଛୁ ।

ଶେଷରେ ସବୁ ଯେ ଅପୂର୍ଣ୍ଣ । ଦୁର୍ବଳ ମୁହୂର୍ତ୍ତର ପ୍ରେରଣା ନେଇ ସୃଷ୍ଟିର ଆରମ୍ଭ ସୃଜନର ସବୁ ସମ୍ଭାର ତଳେ ଅବଚ୍ଛିନ୍ନ ଭାବରେ ଜଡ଼ି ରହିଲ୍ ଅଭାବ, ଅଭାବ, ଅଭାବ । ଫୁଲ ଝଡ଼ିଲା । ଭଅଁରର ଡେଣା ବି ଛିଡ଼ିଲା ।

ପ୍ରଶାନ୍ତ ଚନ୍ଦ୍ରାର ଦରିଆରେ ଅଶାନ୍ତ ଝଞ୍ଜା ଛୁଟିଲ୍ । କୂଳରେ ପିଟି ହେଇ ଗୋଟାଏ ଢେଉ ହେଲ୍ ଦୁଇଟା । ଦୁଇ ହେଲ ଗ୍ଟର । ଗ୍ଟର ହେଲ ସହସ୍ର ନତ୍ୟ ନୂତନତା ତଳେ ତାଙ୍କର ଆକୁଳ ପ୍ରାଣ ଆହୁରି ବ୍ୟାକୁଳ ହୋଇ ଉଠିଲା ।

କ୍ଳାନ୍ତ, ଶାନ୍ତ ପାଶୋର ଅହରହ ରୂପକାର ରୂପଦେଲେ ନୂତନ, ନୂତନତର, ନୂତନତମ । ଲତାର ଦୋଳାରେ ରସି ଦୋଳାଇଲେ କପୋତର ଦମ୍ପତ୍ତି । ପାହାଡ଼ ବୁକୁରେ ବସି ଖେଳାଇଲେ ଝରଣାର ସମ୍ପତ୍ତି । ଜୋହ୍ନାର ଜୁଆର ତଳେ ହସାଇଲେ ସଂଧ୍ୟାର କୁମୁଦ । ମଳୟର ମୃଦୁ ତାଳେ ତାଳେ ଭସାଇଲେ ଫଗୁଣର ଆମୋଦ ।

ତାପରେ । କପୋତକୁ ବ୍ୟାଧ ବନ୍ଧିଲ । ପାହାଡ଼କୁ ଦାବାଗ୍ନି ରୁନ୍ଧିଲ । ସକାଳରେ କୁମୁଦ କାନ୍ଦିଲ । ମଳୟକୁ ବରଷା ନନ୍ଦିଲ ।

ରୂପସୀର ଅଧୀର ଅଧର ଉପରେ ଦେଲେ ପିପାସାର ଆକର୍ଷଣ । ହସରେ ଭସାଇଲେ ନାଚିଲା ନବରଙ୍ଗର ସୋମରସ । ଆଖିରେ ଦେଲେ ଅକ୍ଷୟ ତୂଣୀର, ତରୁଣର ପ୍ରାଣକୁ ହାଣି ହାଣି, ପାଣି କରି ଦେବାକୁ । ବାହାରର ସୁଖ, ସୌନ୍ଦର୍ଯ୍ୟ ସହିତ ଢାଳ ପକାଇ ଅନ୍ତରରେ ତାର ଗର୍ଜି ଉଠିଲା ସର୍ବନାଶୀ ବିଶ୍ୱାସଘାତକତା ।

ଦୟା କ୍ଷମା, ସ୍ନେହ, ସୋହାଗରେ ସେ ଦେଲେ ସୃଷ୍ଟିର ସାର୍ଥକତା । ହିଂସା, ଦ୍ୱେଷ, ରାଗ, କ୍ରୋଧର ନାଆଁରେ ସୁନାର ସୃଷ୍ଟି ଜଳି ଜଳି କଳା ପଡ଼ିଗଲା ।

କଳ୍ପନା ସମୁଦ୍ର ଆହୁରି ଉଚ୍ଛଳ ହୋଇ ଉଠିଲା । ଅସ୍ତ ବ୍ୟସ୍ତ ହୋଇ ଅନାଦି ଅନନ୍ତ ଆହୁରି ଦେଲେ ଉନ୍ମତ୍ତ, ଉଦଗ୍ର ।

× × ×

ନା, ନା, ନା, ନା, । ପିପାସାର ଶେଷ ନାହିଁ । କୃତିର ସମାପ୍ତି ନାହିଁ । ଭାବର ଭୋର ହେଉଛି ଅଭାବରେ । ଶେଷର ଶେଷ ଅଶେଷରେ ।

ମୁକ୍ତି, ମୁକ୍ତି, ମୁକ୍ତି, ! ମହାବାହୁଙ୍କର ବୈକଲ୍ୟ ? ଶ୍ରମର ସାର୍ଥକତା ନାହିଁ । ଶ୍ରାନ୍ତିର ସୁସୁପ୍ତି ନାହିଁ । ଉପାୟ ?............କଣ, କଣ, କଣ, ?

ହଁ, ଯାହାର ଯେଉଁଠୁ ଆରମ୍ଭ, ତାର ଶେଷ ସେ ସେଇଠି ନ୍ୟସ୍ତ । ବିକାଶରୁ ବିନାଶ । ମଣିଷ, ସୃଜନର ସର୍ବଶ୍ରେଷ୍ଠ ସର୍ଜନା । ସେ ହିଁ କରିବ ଧ୍ୱଂସ ତାଣ୍ଡବର ରୁଦ୍ର ତାଳଘାତ ।

ମହାବାହୁ ମହାରୁଦ୍ରର ଅନୁଭବ ନେଇ ମହାକାଳ ସାଜିଲେ । ତୂଳୀରେ ତାଙ୍କର ବୋଳି ବୋଳି ଦେଲେ କଳା କଳା ଧ୍ୱଂସର ସର୍ବନାଶୀ ରଙ୍ଗରାଶି ।

ସରଳ ଆତ୍ମାତୃପ୍ତି ଅନ୍ତରରୁ ସମୂଳ ଲୁଟିନେଇ ମଣିଷର ମନରେ ଭରିଦିଆଗଲା ଅସରନ୍ତି ଦୁର୍ଦ୍ଦମ ସୈତାନର ଅଭିଳାଷ ।

ଅନ୍ୟର ସର୍ବନାଶରେ ସ୍ୱାର୍ଥର ସଂରକ୍ଷଣ ତାର ହେଲା ମୁଖ୍ୟ ଅବଲମ୍ବନ । ଅଗ୍ରଗତିର ଅର୍ଥ ହେଲା, ବ୍ୟଭିଚାର, ବିନାଶ, ବିଷକ୍ରିୟା । ସଭ୍ୟତାର ସଂଜ୍ଞା ହେଲା, ହତ୍ୟା ଆଉ ହତ୍ୟା, ରକ୍ତ ଆଉ ରକ୍ତ । ମଣିଷର ସ୍ଥୂଳ ବିଶ୍ୱାସକୁ ବିନାଶ କରି କ୍ରମଶଃ ନିବେଶ କଲେ ବୁଦ୍ଧି ପର୍ଯ୍ୟାୟରେ ସୂକ୍ଷ୍ମତା । ଆଉ ସେ ସୂକ୍ଷ୍ମତାରେ ମାଖିହୋଇଗଲା ସର୍ବଗ୍ରାସୀ ବିଧ୍ୱଂସର ବିଷଧ୍ୱନି ।

କେବଳ ଧ୍ୱଂସଦେଇ ମଣିଷ ଚାଖିଲା ଖାଇବାର ଅପୂର୍ବ ସ୍ୱାଦ । ନାୟିକାର ମାଂସଳ ଗ୍ରୀବାରେ ଇସ୍ପାତ ଚଳାଇ ନାୟକ ପାଇଲା ପ୍ରେମର ପରିତୃପ୍ତି । ପ୍ରେମିକା ତା ପଲଙ୍ଗି ଓଠରେ ବିଷର ପ୍ରଲେପ ଲିପି ପ୍ରେମିକକୁ ଦେଲା ପ୍ରୀତିର ସମ୍ଭାଷଣ । ଗୋଲାପର ରୂପ ଗନ୍ଧ ଭୁଲି ପାଦରେ ଦଳି ଦଳି ରୂପପାପୀ ପାଇଲା ରୂପ ସେବାର ସାର୍ଥକତା । ସନ୍ତାନ ବେକରେ ଆଙ୍ଗୁଳିର ଶକ୍ତି ଚାପଦେଇ ମାଆ ପାଇଲା ବାତ୍ସଲ୍ୟର ଆମୋଦ । ବନ୍ଧୁତ୍ୱର ସେରଓ୍ୱାନି ଭିତରେ ବାଘନଖ ରଖି ବନ୍ଧୁ ଦେଲା ବନ୍ଧୁର ଆହ୍ଲାଦର ଆଲିଙ୍ଗନ ।

ସମସ୍ତେ ଦ୍ୱନ୍ଦ୍ୱବଶରେ ଅଙ୍ଗସଜ୍ଜା ନେଇ ଶିକାର ପାଇଁ ଓରଉଣ୍ଡି ବସିଲେ । ସମସ୍ତଙ୍କ ଭିତରେ ଅହଂର ହୁଙ୍କାର । ସାମର୍ଥ୍ୟର ରେଉଁକାର ଶୀତଳ ଯୁଦ୍ଧ । ଅସୂୟାର ଅନ୍ତର୍ଦାହ ।

× × ×

ପ୍ରଥମ ମହାସମର । ପୃଥିବୀ ସଶଙ୍କ । ମାନବ ଜନ୍ତୁ ହତ୍ୟାର ଫୁର୍ତ୍ତିରେ ମାତିମାତି ନିଃଶଙ୍କ । ଗୋଳା, ବାରୁଦ ତୋପ, କମାଣ । ସୁଲଭ ହତ୍ୟାର ପ୍ରଭୂତ ଆବିଷ୍କାର ଆଗେଇ ଚାଲିଲା ।

× × ×

ଦ୍ୱିତୀୟ ମହାସମର । ଧ୍ୱଂସର ପ୍ରବଳତର ଅଭିନବ ଆବିର୍ଭାବ । ପରମାଣୁ ଯୁଦ୍ଧ ।

ତୃତୀୟ ମହାସମର ମୃତ୍ୟୁର ମହାମାରୀ ଫୁତ୍କାର । ହାଇଡ୍ରୋଜେନ୍ ବମ୍, କ୍ଷେପଣାସ୍ତ୍ର, କସ୍ମିକ୍ ରେଜ୍ ।

× × ×

ଚତୁର୍ଥ ମହାସମର । ପଞ୍ଚମ ମହାଯୁଦ୍ଧ । ହତ୍ୟା, ହତ୍ୟା, ହତ୍ୟା, ସମୂଳ ହତ୍ୟା, । ମୃତ୍ୟୁ, ମୃତ୍ୟୁ, ମୃତ୍ୟୁ, ସବୁର ମୃତ୍ୟୁ । ମଣିଷକୁ ହତ୍ୟା, ପ୍ରକୃତର ମୃତ୍ୟୁ । କଳୁଆଗୋଳରେ ମଣିଷ ଯାଦବର ହଣାହଣି । ସବୁ ନିଃଶେଷ ହୋଇଯିବାର ପ୍ରଚଣ୍ଡ ଯନ୍ତ୍ରପାତ ।

× × ×

ବିଶ୍ୱର ଦେବତା ତୃପ୍ତିରେ ହସି ଉଠିଲେ । ଉଦ୍‌ବେଳିତ ଉତ୍ତୁଙ୍ଗ ବାରିଧି ଧୀରେ ଧୀରେ ନଇଁ ଆସୁଥିଲା ।



# କଥାଣ୍ଟି

ଗୋଟିଏ ଶ୍ରେଷ୍ଠିଆ ରାଜ୍ୟରେ ଜଣେ ବଡ଼ ରାଜା ଥିଲେ । ଅର୍ଥାତ୍ ରାଜ୍ୟଟି ଯଦିଓ ଶ୍ରେଷ୍ଠ, ସେ ରାଜ୍ୟର ରଜା ନିଜକୁ ରାଜାଧିରାଜଠାରୁ ଆହୁରି ଉପର ପାହ୍ୟାର ସମ୍ରାଟ ବୋଲି ଭାବୁଥିଲେ । ଏମିତି ଏକ ଅସଙ୍ଗତ ଭାବନାକୁ ଭାବିବାକୁ ତାଙ୍କର ଗାଦିନସିନ୍‌ଠାରୁ କେତେକ ତାଙ୍କର ବେତନ ଭୋଗୀ ଅନୁଗତ ଭୃତ୍ୟ ତାଙ୍କୁ ପଢ଼ାଇ ପଢ଼ାଇ ପଣ୍ଡିତ କରିଦେଇଥିଲେ । ତାଙ୍କ ଦରବାରରେ ସ୍ୱତନ୍ତ୍ର ଭାବରେ କେତେକ ପାର୍ଷଦ ନିଯୁକ୍ତି ପାଇଥିଲେ, ଯେଉଁମାନଙ୍କର ରାଜାଙ୍କୁ ତୋଷାମଦ କରିବା ହିଁ ଏକମାତ୍ର ରାଜକର୍ମ ଥିଲା । ତୋଷାମଦର ସ୍ତର 'ଆହା କି ସୁନ୍ଦର ଶ୍ରୀମୁ ଦରବାର ମନ୍ଦିରରେ' ଠାରୁ ଉଠି ଉଠି 'ଶ୍ରୀହଜୁରଙ୍କ ଆଜ୍ଞାରେ ସୂର୍ଯ୍ୟ ଚନ୍ଦ୍ର ଆତଯାତ ହେଉଛନ୍ତି ପର୍ଯ୍ୟନ୍ତ ପହଞ୍ଚି ଯାଉଥିଲା । ତେଣୁ ସେ ରାଜ୍ୟର ରାଜା, ରାଜ୍ୟର ସମସ୍ତଙ୍କଠୁଁ ସବୁ ଗୁଣରେ ଶ୍ରେଷ୍ଠ ବୋଲି ତାଙ୍କୁ ଅନୁଭବ କରାଇ ଦିଆଯାଇଥିଲା ଏବଂ ସେ ଏ ଅନୁଭବକୁ ଅଭ୍ୟାସ କରି କରି ଅଭ୍ୟସ୍ତ ହୋଇ ପଡ଼ିଥିଲେ । ତେଣୁ ତୋଷାମଦକାରୀମାନେ ଯେଉଁ ସ୍ୱାର୍ଥ ସମ୍ବଳିତ ଆକାଶଛୁଆଁ ତଥ୍ୟସବୁ ତାଙ୍କ ଆଗରେ ଥୋଉଥିଲେ, ସେଗୁଡ଼ାକୁ ଧ୍ରୁବସତ୍ୟ ବୋଲି ସେ ଧରି ନେଉ-ଥିଲେ । ସେମାନେ ସେମାନଙ୍କର ସ୍ଥିତି ଓ ସ୍ୱାର୍ଥ ସମ୍ପର୍କରେ ସର୍ବଦା ସତର୍କ ଥିଲେ । ଖୁସାମତିର ଫୁଲ ଶୁଙ୍ଘାଇ ବଟରା ବେକୁବ୍ ରାଜାକୁ ମେଣ୍ଢା ବନାଇ ସେମାନଙ୍କର ଅଯଥା ପ୍ରାପ୍ୟକୁ ବେଶ୍ ସୁରଖୁରରେ ହାସଲ କରି ନେଉଥିଲେ ।

ଶ୍ରୀଶ୍ରୀମୁ ପାରିଧିକୁ ସବାରି ହେଲେ ହକର ପାଇ ସାଙ୍ଗରେ ତାଙ୍କର ବଡ଼ ବଡ଼ ବାଣୁଆ ଓ ଝାଣୁଅ ଝାଣୁଆ ଦେହରକ୍ଷୀମାନେ ହାତ ହତିଆର ହୋଇ ବାହାରି ପଡ଼ୁଥିଲେ । ବାଣୁଆ ବାଘ ମାରୁଥିଲା ଶ୍ରୀହଜୁର ମଞ୍ଚା ଉପରେ ବୋତଲ କୁଣ୍ଢାଇ ମୁଣ୍ଡ ଗଡ଼ାଉଥିଲେ । ବାଘ ମାଟିରେ ପଡ଼ି ସାରିଲା ପରେ ଶ୍ରୀ ଶ୍ରୀମୁଙ୍କ ପହଡ଼ ଭଙ୍ଗାଇ ଗୁଳିଟେ ଯୁଆଡ଼େ ପାରେ ସିଆଡ଼େ ଚଳାଇବାକୁ ଦେହରକ୍ଷୀମାନେ ବିନୟ ଜଣାଉଥିଲେ । ତାପରେ ସମସ୍ତେ ଶ୍ରୀହଜୁରଙ୍କ ଅବ୍ୟର୍ଥ ଗୁଳିରେ ମହାବଳ ମରି ଶୋଇଲା ବୋଲି କେବଳ ଜୟ ଜୟକାର.

କରୁନଥିଲେ, ଶ୍ରୀଗୁମ୍ଫୁ ତାଙ୍କର ଅମୂଲ୍ୟ ଜୀବନକୁ ବିପନ୍ନ କରି ଅନ୍ୟମାନଙ୍କ ଜୀବନ ରକ୍ଷା ପାଇଁ ମହାବଳ ଉପରକୁ ନିପରି ବୀରବିକ୍ରମରେ ଲମ୍ଫମାରି ଅସୀମ ସାହାସ ସହିତ ଉନ୍ମତ୍ତ ବାଘକୁ ଆୟତ୍ତ କରି ହତ୍ୟାକଲେ, ତା ଉପରେ ଏକ କଳ୍ପିତ କୃତିର କାହାଣୀ ତିଆରି କରି ଗୁରିଆଡ଼େ ପ୍ରଗ୍ରର କରୁଥିଲେ ।

ରାଜ୍ୟ କୁସ୍ତି ପ୍ରତିଯୋଗିତାରେ ରାଜାସାହେବ ସତର୍କରେ ଫାଲକା ଉପରକୁ କୁଦାମାରି ଶ୍ରେଷ୍ଠମଲ୍ଲ ସହିତ ପଞ୍ଝା ମିଳାଇ ତାଙ୍କୁ ଟାଣି ଆଣି ଚିତ୍ କରି ଦେଉଥିଲେ ଏବଂ ମଲ୍ଲ ବିଚରା ହାରିଯିବା ପାଇଁ ଆଗରୁ ପ୍ରସ୍ତୁତ ହୋଇ ରହିଥିଲା । କାରଣ ସେ ସେପରି ଅଭିନୟ କରିବ ବୋଲି ତାଙ୍କୁ ଯଥେଷ୍ଟ ପୂର୍ବରୁ ହୁସିଆରି କରି ଦିଆ ଯାଇଥିଲା ।

ପଣ୍ଡିତ ସଭାରେ ଶ୍ରୀଗୁମ୍ଫୁ ବିଭକ୍ତି ରଚନାର ବିନ୍ଦୁ ବିସର୍ଗ ନବୁଝିଲେ ବି କିମ୍ଭୂତ କିମାକାର ବ୍ୟାଖ୍ୟା ସବୁ କରୁଥିଲେ ଏବଂ ସଭାସଦ୍ ଓ ସମବେତ ଜନତା ଗୁମ୍ଫୁଙ୍କର ମନ୍ତବ୍ୟକୁ ଏକମାତ୍ର ଯୁକ୍ତିଯୁକ୍ତ ସିଦ୍ଧାନ୍ତ ବୋଲି ଧନ୍ୟଧନ୍ୟ କରୁଥିଲେ ଓ ତତ୍ ସଙ୍ଗେ ସଙ୍ଗେ ପଣ୍ଡିତମାନଙ୍କ ମୁଖରେ ଶ୍ରୀହଜୁରଙ୍କୁ ବିଦ୍ୟାରି ବାରିଧି ବୋଲି ପ୍ରଗ୍ରର କରାଇବାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ପ୍ରକାଶ ଥାଉକି, ଶ୍ରୀହଜୁରଙ୍କ ଶିକ୍ଷାଗତ ଯୋଗ୍ୟତା କେବଳ ଏକ ବଙ୍କାଟଙ୍କା ଅକ୍ଷରଯୁକ୍ତ ଦସ୍ତଖତ ପର୍ଯ୍ୟନ୍ତ ଯାଇ ସେଇଠି ଅଟକି ଯାଇଥିଲା । ଆଗକୁ ଆଗେଇବା ପାଇଁ ଶ୍ରୀହଜୁରଙ୍କ ଦକ୍ଷତା ଥିଲା କି ନଥିଲା, ସେ ଦୁସରା କଥା । ଆଗେଇବା ଶ୍ରୀହଜୁରଙ୍କ ଆବଶ୍ୟକତା ନଥିଲା । ତାପରେ ଶ୍ରୀଗୁମ୍ଫୁଙ୍କ କର୍ମିମତ୍ତ ସମ୍ପର୍କରେ ବିଶେଷ ବିଶ୍ଳେଷଣ ପାଇବା ପାଇଁ ଅବକାଶ ବି ନଥିଲା । କାରଣ ମହାମାନ୍ୟଙ୍କ ଗୃହଶିକ୍ଷକ ବହୁତଦିନ ଆଗରୁ ମରି ଯାଇଥିଲେ ।

ଫୁରସତ୍ ସମୟରେ (ରାଜାଧିରାଜଙ୍କ ଦିନଯାକ ସବୁସମୟ ଫୁରସତ୍ ସମୟ ଥିଲା) ଶ୍ରୀଗୁମ୍ଫୁ ପଶା ଖେଳିବା ହେଉଥିଲେ । ତେଣୁ ଗୁରିଜଣ ଭିତର ପାତ୍ର ପଶାପାଲି ବିଗ୍ଛାଇ ସବୁବେଳେ ପ୍ରସ୍ତୁତ ରହୁଥିଲେ । ଶ୍ରୀହଜୁର ହଠାତ୍ ବିଜେହୋଇ ଯାହାକୁ ଇଚ୍ଛା ନିଜର ସାଙ୍ଗିଆ କରିନେଇ ଖେଳ ଆରମ୍ଭ କରୁଥିଲେ । ଶ୍ରୀଗୁମ୍ଫୁଙ୍କ ଦାନ ଯାହା ପଡ଼ୁଥିଲା, ତାଙ୍କୁ ଖାପ୍ ଖୁଆଇବା

ମୁଦ୍ଭାବକ ଠିକ୍ ଜାଗାକୁ ବିପକ୍ଷ ପକ୍ଷର ଗୋଟିଏ ଆଙ୍ଗୁଳିରେ ଘୁଞ୍ଚାଇ ଦିଆ ଯାଉଥିଲା । କମ୍ଭା ଶ୍ରୀନନ୍ଦକୁର କାଠି ଗଡ଼ାଇ ଦେବା ପରେ ପରେ ହଠାତ୍ କାଠିକୁ ଗୋଟେଇ ନେଇ ଶ୍ରୀଗୁମ୍ଫ ଯେଉଁ ଦାନ ଡ଼ାକୁଛନ୍ତି, ତାହା ପଡ଼ୁଛି ବୋଲି ସମସ୍ତେ ଆହ୍ଲାଦରେ ଚିତ୍କାର କରି ଉଠୁଥିଲେ । ତାପରେ ରାଜା-ସାହେବ ବିପୁଳ ବିକ୍ରମରେ ବିପକ୍ଷର ଗୋଟିକୁ ଭାଙ୍ଗି ଯିବା ପର୍ଯ୍ୟନ୍ତ ପ୍ରବଳ ହର୍ଷଧ୍ୱନି ମଧ୍ୟରେ ବାଡ଼ାଉଥିଲେ ।

ଏମନ୍ତ ଶ୍ରୀ ଗୁମ୍ଫୁଙ୍କର ନଅର ନିକଟରେ ତାଙ୍କର ଜଣେ ବାଲ୍ୟ ବନ୍ଧୁ ରହୁଥିଲେ ଯଦିଓ ସେ ରାଜ୍ୟର ଜଣେ ବିଶିଷ୍ଟ ପଣ୍ଡିତ ଥିଲେ ସେ କେବେ ରାଜଦରବାରକୁ ଯିବାକୁ ଇଚ୍ଛା କରୁନଥିଲେ । ବଇଁଚ ଖୁଣ୍ଟ ରାଜା ଓ ପାଳିବିଣ୍ଡା ପରିଷଦର ଗହଣକୁ ଯାଇ 'ଦୁର୍ଦ୍ଧ'ର ରବ ଶୁଣି ନୀରବ ପିକ'ର ଦୟନୀୟ ଅବସ୍ଥାକୁ ଆଦର ନେବାକୁ ସେ ବରଦାସ୍ତ କରି ପାରୁନଥିଲେ । ଥରେ ଶ୍ରୀନନ୍ଦକୁଙ୍କ ପାଖରୁ ତାଙ୍କ ପାଖକୁ ନିକରି ଆସିଲା ଏବଂ ବିଚରା ପଣ୍ଡିତ ବାପୁଡ଼ା ରାଜସାକ୍ଷାତ ପାଇଁ ବାଧ ହେଲେ । ପଣ୍ଡିତଙ୍କର ଗୋଟିଏ ପୋଷା ଦେଶୀ କୁକୁର ଥିଲା । ପଣ୍ଡିତ ମହାଶୟ ଯୁଆଡ଼େ ଯାଉଥିଲେ, କୁକୁରଟା ତାଙ୍କର ପିଚ୍ଛା ଧରୁଥିଲା । ପଣ୍ଡିତେ ସିଂହଦରଜା ପାରହେଇ ଉଆସ ଆଡ଼କୁ ଆଗେଇଲେ । ତାଙ୍କ ପଛେ ପଛେ ତାଙ୍କ କୁକୁର ବି ଭିତରକୁ ମୁହାଁଇଲା । ଯୋଗକୁ ରାଜଭବନ ଆଗରେ ରାଜାଙ୍କ ବିଦେଶୀ କୁତ୍ତା ସହିତ ପଣ୍ଡିତଙ୍କ ଦେଶୀ କୁକୁରର ଭେଟ ହୋଇଗଲା । ତାପରେ ଦ୍ୱନ୍ଦ୍ୱରେ ଡ଼ାକରା ପାଇ ଦୁହେଁ ଆସ୍ଫାଳନ ଦେଉଁ ଦେଉଁ ପ୍ରତ୍ୟକ୍ଷ ସମର ଆରମ୍ଭ କରିଦେଲେ । ଶ୍ରୀଗୁମ୍ଫୁଙ୍କ ବିକ୍ରମୀ ସଭାସଦ୍ ଜଣେ ଦୁଇଜଣ ସେଠି ଅବଶ୍ୟ ଉପସ୍ଥିତ ଥିଲେ । ସେମାନେ ପଣ୍ଡିତଙ୍କ ପ୍ରତି ବିଦ୍ରୂପର ମନ୍ତବ୍ୟ ଦେଲେ ଯେ ଦେଖାଯାଉ ପେଜଖିଆକୁ ମାଂସଖୋଜା କେମିତି ପାଠ ପଢ଼ାଉଛି । କୁକୁର ଲଢ଼େଇ କିଛି ସମୟ ଚାଲିଲା । ଶେଷରେ ରାଜାଙ୍କ ଡ଼ାହାଳ ରକ୍ତ ଜୁଡ଼ବୁଡ଼୍ ହେଇ ଶୋଚନୀୟ ପରାଜୟ ନେଇ ଲାଙ୍ଗୁଡ଼ ଜାକି ଉଆସ ଭିତରକୁ ଭୁକି ଭୁକି ପଳାଇଗଲା । ପଣ୍ଡିତେ ନିଜକୁ ସମ୍ବରଣ କରି ନପାରି ପେଜଖିଆର କରାମତି ଦେଖିଲ ତ ବୋଲି କହି ପକାଇଥିଲେ ।

ତତ୍କ୍ଷଣାତ୍ ତଟସ୍ଥ ସଭାସଦ୍ କୁକୁର ପଛେ ପଛେ କୁକୁରଠୁଁ ଆହୁରି ଧାଇଁଲା ହେବାର ଅଭିନୟ କରି ଉଆସ ଭିତରକୁ ଧାଇଁ ଗଲେ

ଏବଂ ଶ୍ରୀଗୁରୁଙ୍କ ଶ୍ରୀମୁଖକୁ ଅଶ୍ରୁଳ ଆଖିରେ ଅନାଇ ଗୁରର ଭକ୍ତ ବ୍ରାହ୍ମଣ-ଟାର ଆସ୍ପର୍ଦ୍ଧାର କାହାଣୀକୁ ମନମାନ ମିଥ୍ୟାରୂପ ଦେଇ ବଖ୍ୟାନ କଲେ ଏବଂ ଏତାଦୃଶ ରାଜା ଅସମ୍ମାନର କଠୋର ବ୍ୟବସ୍ଥା ପାଇଁ ଶ୍ରୀହଜୁରଙ୍କ ଶ୍ରୀସମ୍ମୁଖରେ ଦୃଢ଼ ଦାବୀ ଉପସ୍ଥାପିତ କଲେ । ଶ୍ରୀଗୁରୁଙ୍କର ଶ୍ରୀମଗଜର ଶ୍ରୀରସମାନେ ସେତେବେଳକୁ ତାତ୍ତ ତାତ୍ତ ତରଳିବାକୁ ବସିଲେଣି । ସାଙ୍ଗେ ସାଙ୍ଗେ ଅନ୍ୟସବୁ ଭିତର ପାରିଷଦଙ୍କୁ ସ୍ୱତନ୍ତ୍ର ଉଗର ଯାଇଁ ହକାରି ଆଣିଲା । ଶ୍ରୀଗୁରୁଙ୍କ ଶ୍ରୀଅଙ୍ଗ ରାଗରେ ଅସମ୍ଭାଳ ହୋଇ ଦୋହଲୁଥିଲା । ସାଙ୍ଗେ ସାଙ୍ଗେ ମୁଣ୍ଡକାଟର ବ୍ୟବସ୍ଥା କଲେ ଶ୍ରୀହଜୁରଙ୍କ ଓଜନ କମିଯିବ, ଏବଂ ବ୍ରାହ୍ମଣକୁ କସିକରି ପାନେ ଦେବାକୁ ସମସ୍ତେ ମତ ପୋଷଣ କଲେ । ତାପରେ ବହୁ ଫୁସ୍‌ଫାସ୍ ପରେ ଗୋଟାଏ ଯୋଜନାର ଛଟା ତିଆରି ହୋଇଗଲା ।

ପଣ୍ଡିତ ବିଚରା ତଟସ୍ଥ ହୋଇ ଉଆସ ଆଗରେ ଛିଡ଼ା ହୋଇଥିଲା । ପାଟିତ ଖସି ଯାଇଛି । ନିଜ ଜିଭ ଉପରେ ସେ ଅଭିଶାପ ବର୍ଷୁଥିଲେ । କାହିଁକି ସେ ଆସିଲେ ? ଆସିଲେ ବୋଲି ସିନା ଇମିତ ଫସିଲେ । ନିଜ କୁକୁରକୁ ସେ ବଦ୍ଧୁର ଗୋଇଠା ପକାଇଲେ । ଯ୍ଯାର ଲାଗି ତାଙ୍କ ଅବସ୍ଥା କଣ ହେବ, ଭଗବାନ ଜାଣନ୍ତି କୁକୁରଟା ଲଡ଼ି ଲଡ଼ି ହାଲିଆ ହୋଇ ପଡ଼ିଗଲା । କୁଁ କୁଁ ହୋଇ ତାଙ୍କ ଗୋଡ଼ ପାଖରେ ପଡ଼ିଗଲା । ପଣ୍ଡିତଙ୍କ ଆଖିପତା ଓଦା ହୋଇଗଲା । ବିଜୟୀ ବୀରକୁ କଣ ମାଡ଼ଦେଇ ଅଭିନନ୍ଦନ ଦିଆଯାଏ ? ସେ ବସିପଡ଼ି କୁକୁରକୁ ଆଉଁସିବାକୁ ଲାଗିଲେ ।

ଜଣେ ଭିତରିଆ ଆସି ପଣ୍ଡିତଙ୍କୁ ହୁକୁମ ଜଣାଇଲା ଯେ ଶ୍ରୀଗୁରୁଙ୍କର ଶ୍ରୀ ଅଙ୍ଗରେ ପୀଡ଼ା ହେଉଛି । ପଣ୍ଡିତଙ୍କୁ ରାତ ନିମନ୍ତ୍ରଣ ରହିଲା ସେ ଆସି ଶ୍ରୀହଜୁରଙ୍କ ସାଙ୍ଗରେ ମଣୋହିରେ ବସିବେ । ପଣ୍ଡିତେ ଟିକିଏ ଆଶ୍ୱସ୍ତ-ହେଲେ । ବୋଧହୁଏ ରାଜାଙ୍କ କାନକୁ କଥା ଯାଇନାହିଁ । କିବା କଥା ଯେ ।

ରାତରେ ପଣ୍ଡିତେ ଉଆସକୁ ଆସିଲେ । ଭିତରୁ ବାର୍ତ୍ତା ଆସିଲା, ଶ୍ରୀଅଙ୍ଗର ପୀଡ଼ା କମିନାହିଁ । ରାଜବୈଦ୍ୟ ଶ୍ରୀଗୁରୁଙ୍କୁ ବିଶ୍ରାମ ନେବାକୁ ଜଣାଣ କରିଛନ୍ତି । ରାତରେ ପଣ୍ଡିତେ ମଣୋହି କରି ଉଆସରେ ପହଡ଼ କରିବେ । ସକାଳୁ ଶ୍ରୀଗୁରୁ ଦର୍ଶନ ଦେବେ । ପଣ୍ଡିତେ ସକାଳୁ ଆସିବେ ବୋଲି ଗୁହାରି

ଜଣାଇଲେ ବି କେହି ନଶୁଣି ଚାଲିଗଲେ । ପଣ୍ଡିତେ ଖାଇସାରି ଦୋଦୋ ପାଞ୍ଚ ହୋଇ ରାତିରେ ନଅରରେ ରହିଲେ । ରାତିସାରା ତାଙ୍କ ଆଖିରେ ପିତା ପଡ଼ିଲାନି । ମନ ସବୁବେଳେ ଗୁଡ଼ୁ ଗୁଡ଼ୁ ହେଉଥାଏ । ପାହାନ୍ତା ଆଡ଼କୁ ତାଙ୍କର ଆଖି ଲାଗିଗଲା ।

ସକାଳୁ ସକାଳୁ ପାଟିଗୋଳ ଶୁଣି ପଣ୍ଡିତେ ଉଠି ପଡ଼ିଲେ । ତାଙ୍କ ଶୋଇବା ଘର ଆଗରେ ହୋହାଲ୍ଲା, ହାଇଚାଇ ଚାଲିଛି । ତାପରେ ତାଙ୍କ ଉପରେ ଶୋଧନା, ଥଟ୍ଟା ତାମସା ଆରମ୍ଭ ହୋଇଗଲା । ରାତିରେ କାଳେ ଶ୍ରୀନଅରର କେଉଁ ଦାସୀ ଉପରେ ସେ ବଳାତ୍କାର କରିବାକୁ ବସିଥିଲେ । ଶ୍ରୀଛାମୁ ଶ୍ରୀନୟନ ଲାଲ ଲାଲ କରି ଶ୍ରୀମୁଖରୁ ହୁକୁମ କରିବା ହେଲେ ଯେ ପଣ୍ଡିତ ପିଠିରେ ପଚାଶ ବେତ ଦିଆଯିବ । ତାପରେ ତାଙ୍କୁ ଲଣ୍ଡାକରି,ତାଙ୍କ ମୁହଁରେ ଚୂନକାଳି ବୋଳି, ଗଧ ପିଠିରେ ବସାଇ, ଢୋଲ ବଜାଇ ରାଜଧାନୀ ବଜାରରେ ତାଙ୍କୁ ବୁଲାଯିବ । ଆଉ କାଲି ଭିତରେ ସେ ରାଜ୍ୟ-ଛାଡ଼ି ଚାଲିଯିବେ । ପଣ୍ଡିତଙ୍କୁ କାଲି ରାଜ୍ୟ ଛାଡ଼ିବାକୁ ପଡ଼ିନଥିଲା । ସେହିଦିନ ରାତିରେ ଅପମାନକୁ ହଜମ କରି ନପାରି ସେ ଦୁନିଆରୁ ଅପସରି ଯାଇଥିଲେ ।

ଅନେକ ଦିନ ପରେ । ଦିନେ ରାଜଉଆସକୁ ଘେରାଉ କରି ଦିଆଗଲା । ଶ୍ରୀଛାମୁ ଓ ତାଙ୍କ ସଭାସଦ୍ ଦଳଙ୍କ ଉତ୍ପାତ ଆଉ ସହିବାକୁ କେହି ପ୍ରସ୍ତୁତ ନଥିଲେ । ରାଜା ତାଙ୍କ ଭାଇ ବିରାଦର, ତାଙ୍କ ସିପାହୀ, ସେନାପତି, ପାତ୍ର ମନ୍ତ୍ରୀଙ୍କ ଦାଉରୁ ନିଜକୁ ବଞ୍ଚାଇବା-ପାଇଁ ଶହଶହ ଲୋକେ ରାଜ୍ୟଛାଡ଼ି ଚାଲିଗଲେ । ଝିଅ ବୋହୂମାନେ ନିଜର ଇଜ୍ଜତ ପାଇଁ ମୁହଁରେ ଚିତାକୁଟି ନିଜକୁ ଅସୁନ୍ଦରୀ କଲେ ରାଜ୍ୟର ଭେଣ୍ଡିଆମାନେ ଅଖିଆ ଅପିଆ ବେଠି ଖଟି ଖଟି କଣ୍ଟାମାଳ ପାଲଟି ଶେଷକୁ ଶୁଖି ଶୁଖି ମରିବାକୁ ଲାଗିଲେ ।

ରାଜ୍ୟରେ ପ୍ରଜାମେଳି ହେଲା । ପ୍ରଜାମଣ୍ଡଳର ମୁଖିଆମାନେ ଦୁଆର ଦୁଆର ବୁଲି ବୁଲି ବିଷ ଉଦଗାର କଲେ । ପୂର୍ବକଥିତ ପଣ୍ଡିତ ବୃତ୍ତାନ୍ତ ଇତିହାସରୁ ଉଦ୍ଧାର କରି ରାଜତନ୍ତ୍ରର ଅବିଚାର ଓ ଅତ୍ୟାଚାରର ନମୂନା ଗୀତ ଆକାରରେ ପ୍ରଚାର କରି ଲୋକଙ୍କୁ ଯଥେଷ୍ଟ ଉତ୍ତେଜନା

ଦିଆଗଲା । ନେତାମାନଙ୍କ ନେତୃତ୍ୱରେ ରାଜନବର ଅବରୋଧ କରାଗଲା । ଧର୍ମପ୍ରାଣା ରାଣୀ ରାଜାଙ୍କ ଗତିବିଧିରେ ମର୍ମାହତା ହେଉଥିଲେ ବି ନୀରବ ରହୁଥିଲେ । ତାଙ୍କ ସ୍ଥିତିର ମହତ୍ତ୍ୱ ଓ କର୍ତ୍ତୃତ୍ୱକୁ ପର ପରଗୃହୀତ ରାଜା ସାମାନ୍ୟ ବି ଗୁରୁତ୍ୱ ଦେଉ ନ ଥିଲେ ।

ଶେଷରେ ମହାରାଣୀ ରାଜକୁମାରଙ୍କୁ ଜନତା ଆଗରେ ଶୋଇଦେଇ ବିଚାର ମାଗିଲେ । ପ୍ରଜାମଣ୍ଡଳର ମୁଖିଆମାନେ ବସି ସିଦ୍ଧାନ୍ତ ନେଲେ । ରାଜାରାଣୀ ରାଜ୍ୟ ଛାଡ଼ି ଚାଲିଯିବେ । ଶିଶୁ ରାଜକୁମାର ରାଣୀ ମହାଦେଈଙ୍କ ପାଖରେ ରହିବେ ଓ ତାର ଭରଣ ପୋଷଣ ପାଇଁ ରାଣୀଙ୍କୁ ରାଜକୋଷରୁ କିଛି ବୃତ୍ତି ଦିଆଯିବ । ରାଜକୁମାର ସାଆଁବାଳକ ହେଲେ ସିଂହାସନରେ ବସିବେ ।

ତାପରେ ପ୍ରଜାମଣ୍ଡଳରେ ମୁଖ୍ୟନେତା ରାଜ ଅଭିଭାବକ ହିସାବରେ ରାଜ୍ୟର ଦାୟିତ୍ୱ ହାତକୁ ନେଲେ । କୌଣସି ରାଜ କର୍ମଚାରୀଙ୍କୁ କାର୍ଯ୍ୟରୁ ନିକାଲି ଦିଆଗଲା ନାହିଁ । ସେମାନେ ଆଗ ରାଜାଙ୍କ ନିମକ ଖାଉଥିଲେ । ତେଣୁ ତାଙ୍କ ହୁକୁମ ମାନି କାମ କରୁଥିଲେ । ବିଚରା ଗୁଡାଙ୍କ ଦୋଷ କଣ ?

ପ୍ରଜାନେତା ସିଂହାସନର ଅଭିଭାବକ ଦାୟିତ୍ୱରୁ ଶୀଘ୍ର ଅବ୍ୟାହତି ନେଇ ମାଲିକାନା ସତ୍ତ୍ୱ ତାହାର କରିବାକୁ ନିତାନ୍ତ ବାଧ୍ୟ ହୋଇପଡ଼ିଲେ । କରିତ୍କର୍ମା ପୁରୁଖା ଭିତର ପାତ୍ରମାନେ ସେମାନଙ୍କ ରାଜକର୍ମ ବିପୁଳ ଉତ୍ସାହ ଓ ନୂତନ ସ୍ଫୂର୍ତ୍ତି ନେଇ ସମ୍ପାଦନ କରିବାକୁ ଅତି ତତ୍ପର ହୋଇ ଉଠିଲେ । ଜନନେତାଙ୍କ ନାକ ପାଖରେ ମାଳିଆଣି ଫୁଲକୁ ଆସ୍ତେ ଆସ୍ତେ ହଲାଇଲା । ନେତା ନିର୍ବୋତ୍ତମ ବାସନା ବାରୁ ବାରୁ ନିଃଶ୍ୱାସ ନେଇ ନୂଆ ନୂଆ ଗନ୍ଧକୁ ଧୀରେ ଧୀରେ ଭିତରକୁ ଟାଣିଲେ । ଜୋର୍‌ରେ ଶୁଙ୍ଘିଲେ । ତାପରେ ବୋତଲର ଠିପି ଖୋଲିଲେ । ନଅରର ପୋଇଲା ପରିବାରୀଙ୍କ କାଖିଲା ଚରିଲେ । ପଶାଖେଳରେ ସବୁବେଳେ ଡାକିଲା ଦାନ ପକାଇ ବିପକ୍ଷ ଗୋଟି ଉପରେ ନିଜ ଗୋଟିକୁ ଦାନ୍ତ କାମୁଡ଼ି କରୁଥିଲେ । ଶିକାର ବ୍ୟାପାରରେ ସେ ଟିକିଏ ଆଗେଇ ଯାଇ ମଞ୍ଚାଉପରେ ମାତ୍ରାଧିକ ବୋତଲ ଦିଅରୁ ଢୁଙ୍ଗୁଡ଼ି ମାରି ଶିକାର ହୁରୁଡ଼ାଇଲେ । ଦୂରରୁ ଅନ

ଏକ ମଞ୍ଚୋତଳକୁ ଶିକାର ଆଣି ତାଙ୍କ ମଞ୍ଚୋତଳେ ଶୁଆଇ ଦିଆଯାଇ ତାଙ୍କୁ ବରିଷ୍ଠ ଶିକାରୀରୂପେ ସମ୍ମାନ ଦିଆଗଲା । ସେ ଶତାବ୍ଦୀର ମଧ୍ୟମ ପାଣ୍ଡବ, ସେ ଯୁଗର କାଳିଦାସ, ସେ ଜମାନାର ମହାମୁନି, ସବୁ ତାଙ୍କୁ କରି ଦିଆଗଲା । ସେ ଶ୍ରୀହଜୁର, ଶ୍ରୀଗୁମ୍ଫର ନବ କଳେବର ଧରି ଧନ୍ୟ, ଗଣ୍ୟ, ମାନ୍ୟ, ବରେଣ୍ୟ, ମନେ ମନେ ସବୁ ହୋଇପଡ଼ିଲେ । ତାଙ୍କ ଗାଲଗିରେ କଣ୍ଠା ଏପାଖରେ ପଶି ସେପାଖକୁ ଫୁଟିଲା । ସେ ବି ସଭାସଦ୍‌ଙ୍କ ଡୋରବନ୍ଧା କଣ୍ଢେଇ ହୋଇ ରାଜାଧିରାଜ ନାଚ ନାଚିଲେ ।

ଏଣିକି ତାଙ୍କ ଶ୍ରୀଗୁମ୍ଫ ପଣିଆରେ ଟିକିଏ ଠକର୍ ଲଗିଲେ ତାଙ୍କ ଶ୍ରୀମୁଖରୁ ଶ୍ରୀଆଖିର ଶ୍ରୀଡୋଳାମାନେ ଲାଲ ଲାଲ ହୋଇ ଓହଳି ଆସିବାକୁ ଲଗିଲେ । ତାଙ୍କ ଭିତର ମହଲର କଣ୍ଢେଇଶିଳ୍ପୀମାନେ ତାଙ୍କୁ ଦାରୁଣ ଭାବରେ 'ଆରେ ଆରେ ପାଷାଣ୍ଡ'ର ନାଚ ନଚାଇ ତାଙ୍କ ଲୁଗାପଟା ବି ଅସମ୍ଭାଳ କରୁଥିଲେ, ଆଉ ତାଙ୍କ ନାଚର ପଛଆଡ଼େ ସେମାନଙ୍କ ଉଦ୍ଦେଶ୍ୟ ସିଦ୍ଧିର ଆମଦାନି ବଢ଼ି ବଢ଼ି ଚାଲିଥିଲା ।

ଥରେ । ଏବେକା ଶ୍ରୀଗୁମ୍ଫଙ୍କ ଜାଣିବାରେ ତାଙ୍କର ଜଣେ ଅତି ବିଶ୍ୱସ୍ତ, ଅତି ଉପକାରୀ, ଅତି ବୁଦ୍ଧିମାନ ଓ ଅତି ଆପଣାର ଭିତର ପାର୍ଟିଙ୍କ ଓଲଆ ଗାଈ ଜଣେ ନିରାଶ୍ରୟା ବିଧବାର ବାଡ଼ିଭାଙ୍ଗି ବଗିଚାର ଶାଗ କିଆରୀ ସବୁ ସାଫ୍ କରିଦେଲା । ବିଧବାଟି ଶାଗ କିଆରୀ କରି ଶାଗ ବିକି ଅତି କଷ୍ଟରେ ନିଜର ଗୁଜୁରାଣ ମେଣ୍ଟାଉ ଥିଲା । ସେ ମହାମାନ୍ୟ ସଭାସଦ୍‌ଙ୍କ ଗାଈଆଳକୁ କଣ ଦି'ପଦ ଚଡ଼ ମିଡ଼ ହୋଇ କହିଲେ । ମାନନୀୟ ସଭାସଦ୍‌ଙ୍କ ଶ୍ରୀମାନ୍ ଗାଈଆଳ ନିଜର ସମ୍ମାନହାନିରେ ଅଖୁସି ହୋଇ ଅତିଶୀଘ୍ର ଅତିପ୍ରତାପୀ ଖାମିନ୍ଦଙ୍କ ଆଗରେ ହାତଯୋଡ଼ ରାଣ୍ଡୀଟା ହଜୁରଙ୍କ ଇଜ୍ଜତ ନେଇ ଅନେକ ଅଶ୍ଳୀଳ ଗାଳି ଦେଇଛି ବୋଲି ମିଛରେ ଯୋଡ଼ଯାଡ଼ ମେଞ୍ଚାଏ ଗପି କାନ୍ଦକାନ୍ଦ ହୋଇ ଫେରାଦ ହେଲା । ହଜୁର ସମ୍ବୋଧନରେ ତାଙ୍କର ଆଖି ଶ୍ରୀନୟନ ହେଇ ଲାଲ ଲାଲ ରଙ୍ଗ ନେଲା । ପଟାପଟି କରି ଭଲ ଦୁଧିଆଳୀ ଗାଈଟା ସେ ଉଆସରୁ ଚାନ୍ଦାରେ ଆଣିଥିଲେ । ସଭାସଦ୍ ତତ୍‌କ୍ଷଣାତ୍ ଶ୍ରୀଗୁମ୍ଫଙ୍କ ଆଗରେ ହାଜର ହେଲେ ଓ ଶ୍ରୀହଜୁରଙ୍କ ଶ୍ରୀସମ୍ମୁଖରେ ତାଙ୍କର କ୍ଷୋଭପୂର୍ଣ୍ଣ ଅଭିଯୋଗ ଅଶନୀଃଶ୍ୱାସୀ ହେଇ ବଖାଣ

କରିଗଲେ । ଗାଈ ଶ୍ରୀଉଆସର । ରାଜଅଂଶୀ ଗୋମାତା । ରାଣ୍ଡୀ ତାଙ୍କୁ ବିନା କସୁରରେ ପିଟି ପିଟି ମାରି ଦେବାକୁ ବସିଥିଲା । ତାକୁ ସଦୁପଦେଶ ଦେଇ ଧର୍ମବିହାର ନ କରିବାକୁ ସେ ବୁଝାଇଲାବେଳେ ମୁଖର ମାଇକିନା ତାଙ୍କୁ ତ ଯାହା ଶୋଧିଲା ଶୋଧିଲା, ଶ୍ରୀହଜୁରଙ୍କ ନାଁରେ ଯେଉଁ ବଦନାମ ସବୁ ଗାଇଲା ନା, ଶୁଣିଲା ବେଳକୁ ଗୁହ ବିଫାଳ ହେଇ ଯାଉଛି । ଗ୍ରାମ୍ଯ କାଳେ ଲଞ୍ଜାଖୋର୍, ମନ୍ଦୋଦ୍ଧ । ରାଇଜ ରଜା ତ ବନବାସ ଗଲେ । ଧାନକୁଟି ପୁଅ ଏଠି ନାଟ ଲଗାଇଛି । ସେ ତା ଜଉଣା ଓଠାରି ଆଣି-ଥାନ୍ତେ ଯେ, କେବଳ ଶ୍ରୀଗ୍ରାମ୍ଯଙ୍କୁ ନ କହି..... ।

କଣ୍ଠେଇ ଡୋର ହଲିଲା । କଣ୍ଠେଇ ଗୋଡହାତ ଗୁଟିଲେ ।

ତାପରେ ସଜ୍ଜନ ସଭାସଦ୍ ଫୁସ୍ ଫୁସ୍ କରି ଲାଳଚଆ ଲାଳଚଆ ଗଳାରେ କହିଲେ ଯେ ମାଇକିନାଟା କିନ୍ତୁ ରାଜଯୋଗ୍ୟ । ଯେଉଁ ଚେହେରା । ସୂର୍ଯ୍ୟଙ୍କୁ ଗ୍ରହଣ ହେବ, ତାକୁ କିନ୍ତୁ ଗ୍ରହଣ ହେବନି । ଆଃ, କି ରୂପ ! କି ଯୌବନ ! ଖାଲି ଶ୍ରୀହଜୁର ଯଦି ଶ୍ରୀଇଚ୍ଛା କରିବେନି......।

ତାପରେ ଉଆସ ଭିତରର ଅପ୍ରକାଶ୍ୟ ଖବର ହେଲା ଯେ ବଡ଼ୁଆ ଅରକ୍ଷା ବିଧବା କୁଡ଼ିଆରେ ରାତି ଅଧରେ ଗୁଣ୍ଡାର ମୁଷ୍ଟିକମାନେ ପଶି ତା ପାଟିରେ ଲୁଗାବିଣ୍ଡା ଦେଇ ଉଆସ ଭିତରକୁ ଟେକି ଆଣିଲେ । ଶ୍ରୀଗ୍ରାମ୍ଯ ବିଶିଷ୍ଟ ସଭାସଦ ଓଗେର ବିସ୍ମସ୍ତ କେତେଜଣ ତା କଞ୍ଚା ମାଂସକୁ ରୋଷେଇ ଭୋକ ଓ ରାଗକୁ ମନ୍‌ମନା ମେଣ୍ଟାଇନେଲେ ।

ପରଦିନ ପ୍ରକାଶିତ ଖବର ହେଲା ଯେ ଗାଁ ମୁଣ୍ଡରେ ରହୁଥିବା ଛୁଣ୍ଡାଳୀ ରାଣ୍ଡ ଦେହକରେ ଦୌଡ଼ିଦେଇ ରଜାଘର ବଗିଚାରେ ଜୀବନ ହାରି ଦେଇଛି । ତାର କାଳେ ଶୂଳବ୍ୟାଧି ବହୁତ ଦିନରୁ ଥିଲା ଓ ସେ ବଡ କଷ୍ଟ ପାଉଥିଲା ।



# ଆପଣା ହସ୍ତେ ଜିହ୍ୱାଚ୍ଛେଦ

ସହ-କର୍ମିଣୀ ସହ-ଧର୍ମିଣୀ କେବେ ସହଯୋଗ ଊଣା କରି ନାହାନ୍ତି । ଚତୁର୍ଥ ପରେ ପଞ୍ଚମ କନ୍ୟାରତ୍ନଙ୍କ ଶୁଭ ଆବିର୍ଭାବ ସନ୍ଦେଶ ମୁଁ ସ୍ୱତଃ ହିଁ ପାଇଗଲି ଯେତେବେଳେ ଆର ପାଖ ଘରେ କୁଆଁ କୁଆଁ ରବ ଉଚ୍ଛୁଳି ଉଠିଲେ ବି ହୁଳହୁଳି ଶୁଭିଲାନି । ଲଗି ଲଗି ଚାରି ଚାରିଟା ଝିଅ— ଏଥର ଗୋଟେ ବଡ ଆଶା ଥିଲି ଯାଃ,··· । ମନ ଭିତରଟା ଖାଲି ଗଲୁ ଦେଲି ଫେର ବି ଝିଅ···ପାଞ୍ଚଟା ଝିଅ । ବାହାରକୁ ଧଡ଼କଣି ଉଠି ପଳାଇ ଆସୁଥିଲି ବାଟରେ ଶାଶୁ ବୁଢ଼ୀ ବିଚରା ହାବୁଡ ଖାଇଗଲେ । ମୁହଁକୁ ବଙ୍କେଇ ଟିକିଏ ନିରେଖି ନେଲି—ଚାରେଇନ୍ଥାର ଝଙ୍କାରଠୁଁ ଆହୁରି ପିଠା ।

ବଡ଼ ଝିଅ ସୁଷମା ଭାତ ପରଷି ଦେଇ ଗଲା । ବଡ ମଝିଆ ଶୁ ଭ୍ରା ପାଖରେ ବସି ବିଞ୍ଚି ଦେଉଥାଏ । ଶୋଭନା ସୁକାନ୍ତ ସାଙ୍ଗରେ ଖାଉ-ଥାନ୍ତି । ସୁଶ୍ରୀଟା ସବା ସାନ—କୋଡ଼ ଛୁଆଟା ଦୋଳରେ ପଡ଼ି ହାତଗୋଡ ଛାଟୁଥାଏ । ସବୁବେଳେ ଏଗୁଡ଼ାଙ୍କୁ ଦେଖିଲେ କେଜାଣି କାହିଁକି ଶାଶୁଙ୍କର ଆମର ଭ୍ରମର ଘରେ ବିଷ ପଶିଯାଏ । ଏଙ୍କ ସଂଖ୍ୟାରେ ଯେତିକି ଯେତିକି ମିଶାଣ ଚାଲିଛି ସେ ସେତିକି ସେତିକି କାଠିରେ ନାଚୁଛନ୍ତି । ଶୋଭନା ସୁକାନ୍ତର ଭାତ ଗୁ ଣ୍ଡା ଉପରେ ଦକ୍ଷିଣ ଅଙ୍ଗୁଳି ରଖିଦେଇ କହିଲା—"ଆଜ ଆମେ କଳ କଳଆ କରିବାନି । ସାଙ୍ଗ ହେଇକି ଖେଳିବା" । ଶାଶୁଙ୍କ ଆଉ ସମଜା ପଡ଼ନ୍ତି ? ତାଙ୍କ ପାଟି ତ ଖାଲି ଗୁଆଁକୁ ଗୁଆଁ ଖଲ ଖଲ ହୋଇ ରବେଇ ଖବେଇ ହେଉଥାଏ, ବଗୁଳିଇ ଛିଗୁଲେଇ କହି ଉଠିଲେ—ଆହା ମରି ଯାଉଥାଏ । ତୁମକୁ ମରଣ ହେଉନି ଲୋ କାଳକାନି କାନ୍ଦାନି ପଲ । ଓଲି ଢଆରୁଛି ବଣ ସାରୁକୁ, ତୋର ମୋର ଯିବା ବାହା ଘରକୁ ।" ଛୁଆ ଦଂଟାଙ୍କ ଆଖି ବତୁରି ଆସିଲା । ସୁଷମା ଚୂଲି ମୁଣ୍ଡରୁ ଧାଇଁ ଆସି ଢ଼ିମା ଢ଼ିମା ଆଖି କାଢ଼ି ପାଟିକରି ଉଠିଲା— "ତୁ ଖୋକଡୀ କାମ୍ପରଖାଇ ବୁଢ଼ୀ ମରୁନୁ । ସବୁବେଳେ ଗୋଟେ କଥା

ଶିନ୍ ହୁର୍ ହୁର୍ କଣ ଲୋ ? କଥା କଥାକେ ଖୁଣ୍ଟା । ଆମକୁ ଏଠି ମାହାଳିଆ ପାଇଛନ୍ତି ?" ବଲୁର ବସାରେ ତ କାଠି ଖେଞ୍ଚି ହୋଇଗଲା । ବୁଡ଼ୀ ଠାକୁରାଣୀ ଏକଦମ ଅବତାର ଆସିଲେ—"ଓହୋଃ ହୋଃ ଗ୍ରଧାକୁ ବାଧିଗଲା । ଶିଗ୍ଲନଗା ହାଡ଼, ଛୁଇଁଲେ ଛ'ଘା ହୋଇ ଯାଉଛି ! କି କହିବି ଗୁଣରାଶି, ହତଶ୍ରୀ ଘରକୁ ପ୍ରପଞ୍ଚ କୁଣିଆ କି ଯୋଗେ ମିଳିଲେ ଆସି ।" ଆଛା କଥା, ପଦକୁ ପଦେ ଗୃଳିଲା । ଗାଈ ମାଇଲେ ମଲା—ଗାଈକି ମାଇଲେ ମଲା ।

ସେ ପାଖ କଡ଼କୁ ଶ୍ରୀମନ୍ତ ବସି ପାନ ଭାଙ୍ଗୁଥାନ୍ତି । ତାଙ୍କ ଆଖିକୁ ବାଧି ହୋଇ ମୁଣ୍ଡ ଟେକିଲା । କେନ୍ଦୁକାଠ କଳା କଟି କଟି ବଚକଟିଆ ଦେହକୁ ଚମ ଟିକିଏ ଟିକିଏ ଅବଶ୍ୟ ଓହଳି ଆସିଲାଣି । ଆଗରୁ ଖାଲି ସାଦାଉପରେ ମୁଖ ଦାନ୍ତୁଲି ଥିଲେ । ଏହା ପ୍ରତି ସନ୍ତାନ ଦାନ ପରେ ପରେ ଦନ୍ତଗୁଚ୍ଛ ଅଧଇଞ୍ଚେ ଲେଖା ହାରରେ ଆଗେଇ ଆଗେଇ ବସ୍ତୁତଃ ମୁହଁର ପରିଧି ପାର ହୋଇ ଢେର ଚପି ଆସିଲେଣି । ଫଳତଃ ଦନ୍ତପନ୍ତିଙ୍କ କ୍ରମ ଅଗ୍ରଗତିରେ ଗୁରୁତ୍ୱ କଲେ ଉପାଧିଟା ବି ସେହି ଅନୁପାତରେ ବଦଳି ବଦଳି ଦାନ୍ତୀରୁ ମହାଦାନ୍ତୀ ପରେ ବି ବିଶେଷଣ ଅଭାବରୁ ବିଷମ ଦାନ୍ତୀରେ ଆସି ଚହଟିଛନ୍ତି । ସଦ୍ୟ ଆଉ ମେନକା ପଟେ ପର ମେଲେଇ ସରଗରୁ ହେଇ ଓହ୍ଲେଇ ପଡ଼ିଛନ୍ତି, ବିଶ୍ୱାମିତ୍ର ଗୁଡ଼ାକୁ ଦମେ ନାକ କାନ ମୋଡ଼େଇ ଉଠବସ କରେଇ ନେବେ ? ନାଁଟା ବିଦ୍ୟୁତ୍‌ପ୍ରଭା ସତ କିନ୍ତୁ ଆମ ସୁରସୁନ୍ଦରୀ ବିଦ୍ୟୁତ୍ ପରେ ପ୍ରଭା ନିଭିଗଲେ ଯାହା, ସେଇଆ ।

•

ବୁଲି ବୁଲି ମଣିଷର ଦଫା ରଫା ଶେଷ । ଘରେ ଆସି ଗୋଡ଼ ଦେଲି ତ ଶାଶୁ ସଙ୍ଗେ ସଙ୍ଗେ ଜେରା ଆରମ୍ଭ କରିଦେବେ—"କୋଉଠି କିଛି ପୁଅ ଯୋଗାଡ଼ଯନ୍ତ୍ର ହେଲା ? ଦ'ଦଟା ବଡ଼ିଲା କୁଡ଼ିଲା ଝିଅ, କେତେଦିନ ଆଉ ଏଠି ପଡ଼ି ତୋ ରକତ ଚୂଷୁଥିବେରେ ? ଏ ସଗର ବଂଶରେ ବାପା ଖାଲି ଚରିଯିବେ । ବଡ଼ ଦୁଇଟାଙ୍କୁ ଯେମିତି ହେଲେ ପାରକର । ବାପା କାଳ ବେଳ ଉଡ଼ି ଯାଉଛି । "ଝିଅ ଯୋଇଲି କା ଆମ୍ବ ଟାକୁଆରେ ଥାଏ କୋଇଲି । ଶେଷକୁ ମୁହଁ ଟେକି ପାରିବୁନି । ସେ ବଡ଼ ବଡ଼ କଥାରୁ କଅଣ

ପାଇବୁ । ବୁଢ଼ା ହଡ଼ା ଅରକ୍ଷିତ ଯେଉଁଠୁ ପାଉଛୁ ବାଟରୁ ଘାଟରୁ ଧରିଆଣି ମୁଣ୍ଡ ନଚେଇ ଦେ । ଜନମ ଦେଇଛୁ ବୋଲି ତ ଆଉ କରମ ଦେଇନୁ । ଆପଣା ଅବସ୍ଥା ତ ବାରଣ୍ଡା ହକଡ଼ା । ମଇନା ବୋଲି କେତେଟା ବା ଟଙ୍କା । ଫୁଙ୍କି ଦେଲେ ଓଳକୁ କୁନେଇବନ । ଦେଖନ୍ତେ ବାଲିଆ କାଟନ୍ତେ ଲଞ୍ଜ । ଖଡ଼ା ଖାଇ ଖାଇ ଦାନ୍ତ ଏଣେ ପାକୁଆ, ନଣରୁ ଘିଅ ପୋଛୁ କ ପଭରଷି ମିଳବ ? ସିମିତି ଦୁଆରେ ଠିଆହେଲେ ସିମିତି ତୋଡ଼ା ଦରକାର ବାପ । ତୋ ସର୍ଜନା ସରିଯିବଟି ? ପଛକୁ ସ୍ୱାସୁଣୀଏ ତ ଧାଡ଼ ଦେଉଛନ୍ତି । ତାଙ୍କ ମୁଣ୍ଡରେ ନିଆଁ । ଛୁଆ ଦେହରେ ମୋର କଳାଶିର ବୁଲିଲାଣି । ପଞ୍ଚଶ ହାଡ଼ ବାର ହେଉଛି । ସେ ଭୁଛା କଥାରେ ମିଛରେ ସିମିତି ବାଇଆ ହୋନା । ଶଙ୍କୁଣୀ ପଲକୁ ଯିମିତି ଦେଉ ହବାକର । "କୋଇଲି ପାରଡ଼ା ଆମ୍ବ, ଦାଣ୍ଡ ହବୁଡ଼ରେ ଯାଉଁଳି କବାଟ ଝଞ୍ଜାରେ ନଡ଼ିଆ ଖମ୍ବ ?"

ଶାଶୁ ଦେବୀଙ୍କର ଏ ମଖମଲି ଘନ ଘନ ଅଭିଯାନକୁ ନୀରବରେ ପିଇଠଇ ଆସିଛି । ଶସ୍ତ୍ରହୀନ କର୍ଣ୍ଣ ମୁଁ—ଜୀବନ ରଥର ଚକ ତଳକୁ ତଳକୁ ହନକୁ ହନ ହବ ଯାଉଛି । ମଝିରେ ମଝିରେ ଶ୍ରୀମତୀଙ୍କ ତାଙ୍କର ଗରଲି ଆକ୍ରମଣ ଛୁଟାଇ ସମସ୍ତ ଦେଖି ବାକ୍ୟବାଣ ଗୁଡ଼ିବାକୁ ଜମା ଭୁଲି ନାହାନ୍ତି । ନେହଲକ ବେଶ ପଦେ ପଦେ ଖେଞ୍ଚି ଖେଞ୍ଚି ଶୁଣେଇ ଦେଉଥାନ୍ତି । ଘରଟା ଗୋଟେ ସମ୍ମିଳିତ ସାମ୍ନାଖ୍ୟ—ସାଥୀ ହୀନ, ଶସ୍ତ୍ରହୀନ ମୁଁ—ସଂଘର୍ଷ କରିବି କେମନେ ? ନା, ଏ ଗୁଡ଼ାକ ଗୋଟାଏ ସ୍ୱାର୍ଥପର ଶ୍ୱାପଦ ସଂଘ । ସମସ୍ତ ସୁଯୋଗ ମୁରଖୁରରେ ହାସଲ କରିବେ—ସୁବିଧା ପାଇଲେ ହତ୍ୟା କରିବେ—ଖାଣ୍ଟି କଥା ବାବୁ ହତ୍ୟା କରିବେ ।

ସୁଷମା, ଶୁଭ୍ରା, ଶୋଭନ, ସୁକାନ୍ତ, ସୁଶ୍ରୀ—ଙ୍କର ସୌନ୍ଦର୍ଯ୍ୟ ଦେଇ ରୂପର ବକାରକୁ କ ଡ଼ାକି ହୁଏ ? ପ୍ରଥମାରୁ ସୁଷମା ପାଇଁ ସମସ୍ତେ ଆଣିଲେ ମାତା ସୁନ୍ଦରୀଙ୍କ ଅଣି ଷୋଳଣା ଉପରେ । ଶୀତଳା ଦେବୀ ବ ମୋ ମନର ଉହ ଉହ ଫୁଟିଲି ଅବଶୋଷ ଗୁଡ଼ାକୁ ବେଶ୍ ଶୀତଳେଇ ଦେଇଗଲେ । ତାଙ୍କର ମହମାପ୍ତ ଦୋହର ଅଭିଯାନ ଉପର ତନଟାଙ୍କ କଳା କନେକ୍ସର ଉପରେ ଅଧଇଞ୍ଚିକିଆ ଶତାଧିକ ଗାତ ଗୁଞ୍ଜୁ ଗୁଞ୍ଜୁ କରି ଖୋଳି ଦେଇଗଲି । କାଳୀ କନ୍ୟାକୁ ବସନ୍ତ ଦାଗ - ବୋଝ ଉପରେ

ନଳିତା ବଢ଼ା । ମେଡ଼ି କୁନ୍ଦଲସନ ଧଡ଼ା ପାର ହେଲ୍ଲ ଜୋଇଁ ଟାର ଦାମ ଅନ୍ତତଃ ନକୁଛ ପକ୍ଷେ ପାଞ୍ଚ ହଜାର ଟଙ୍କା । ସଟା ପୁଣି କଣ୍ଟି ସନାଲ— ଝିଅଟାର ଚମଡ଼ା ବଲ୍‌କୁଲ ଧଳାଥିବ—କଟିଂଟା ଆମକୁସେଲ ବା ଖ୍ରୀଷ୍ଟାଇନ ମାର୍ଟେଲ ନ ହେଲେ ବ ଇନ୍ଦ୍ରାଣୀ ରହମନ ପର୍ଯ୍ୟନ୍ତ ଅନ୍ତତଃ ପହଞ୍ଚିବା ଦରକାର୍—ତଦୁପ୍ତରେ ଶେଷ ଆଉ ମୁଖ୍ୟ ଆବଶ୍ୟକ ହେଉଛି ଗୋଡ଼ଠୁଁ ମୁଣ୍ଡ ପର୍ଯ୍ୟନ୍ତ ଗୋଟାଏ ଖଣ୍ଡମତ ସୁନାର ସାଜ ଦେଇ କନ୍ୟାକ ରମାନା କରବାକୁ ପଡ଼ବ । ତା'ପରେ ଯଦ ଶଶୁର ଜୋଇଁର ସମ୍ବନ୍ଧକୁ ତୁମେ ଶଶୁର ହିସାବରେ ନଗଡ ରଖିବାକୁ ଚାହଁ ତେବେ ପ୍ରତ ମୁହୂର୍ତ୍ତରେ ସଜାଗ ରହିବ—ଯେତେବେଳେ ଶ୍ରୀମାନ ଜାମାତା ମହୋଦୟ ଆର୍ଥିକ ସାହାଯ୍ୟ ପାଇଁ ସାମାନ୍ୟ ଇସାରା ଦେବେ, ଦରକାର ପଡ଼ିଲେ ନଜକୁ ବନ୍ଧା ପକାଇ ମଧ୍ୟ ବନା ବାକ୍ୟ ବ୍ୟୟରେ ଆଗତ ଦାବୀରୁ ଅଧଲାଏ ବ କମ୍ ନ କର ଅତ ସନ୍ତର୍ପଣରେ ତାକୁ ନେବା ପାଇଁ ଅନୁରୋଧ କରବାକୁ ହେବ ।

"ଓଃ ସବୁବେଳେ ଗୋଟେ ଖେଳ ଖେଳ କାହିଁକ ହୁଅ, କୁହନ ? ମୁଁ କଣ ମୋ ଦାୟିତ୍ୱ ବୁଝୁନ ? ଘରେ ଆସି ଗୋଡ଼ ଦେଲ ତ ଯୁଆଙ୍କର ବାହାଘର ଆଉ ଗହଣା । ବାବା ଜୋଇଁ କଣ କେଉଁଠି ରାସ୍ତାରେ ଗଡ଼ୁଛନ୍ତି ଯେ ଗୋଟେଇ ଆଣିବ ? ଏ ମଣିଷଟା ଲଗି ତୁମର ଟିକିଏ ଦରଦ ନାହିଁ ? ଆଉ ଗହଣା—କାନଶିର ଗୋଟା ପାର ହେଇଯାଉଛି, ପାନରୁ ଶିରା ବାହୁଛନ୍ତି । ବାପୁ ମୋ ଅବସ୍ଥା ଟିକିଏ ବୁଝ । ନା ବାପରଣ ତର୍କ ଗିଳ ।" ସ୍ୱର ରାଗ ହେଲ, କେତେ ସମ୍ଭାଳନ୍ତି ? ତମ ତମ ହେଇ ହପଦ କହିଦେଲ । ଆଉ ଯାଏଁ କୁଆଡେ ? ଆଗରେ ଅଭୟା ଆସି ଆସ୍ଫାଳନ ଦେଇ ଦଣ୍ଡାୟମାନ,—"ହଁ, ଏଡ଼େ କଥାଟେ ? କଛି ନ କହିବାରୁ ଗୋଟେ ଭଅ ପାଇ ଯାଇଛନ୍ତି ନା ? ଅଲବତ ତମକୁ ଗହଣା ଗାଣ୍ଠି ଯୌତୁକ ଦେବାକୁ ହେବ । ଯିମିତ ହେଉ ମୋ ଝିଅ ଥିଲବାଲ ଘରେ ପାଠୁଆ ଜୋଇଁ ଦେଖି ବାହାହେବ—ହକନାକ ହେବ । ଏତେବେଳକୁ ମୁଣ୍ଡ ବଗିଡ଼ି ଯାଉଛି, ମୋ ବାପ ସିନା ଅରକ୍ଷିତ । ଲଙ୍କାମରଚ ପାଣି ନାକରେ ପୂରେଇ ଦେଲ । ତୁମେ ସେଇ ମରଦ ନା ? କ ହଟହଟା ତାଙ୍କୁ ନ କରଛ ? ବେଦୀ ଉପରେ ବାପୁ ନ ଛୋଡ଼ ବନ୍ଧା ସାଇକେଲ, ଘଡ଼ି, ବାଁଟଖର୍ଚ୍ଚ

ଆଦାୟ କରନେଲେ । କଣ ଜାଣି ନ ଥିଲ କାଳୀକନିଆ ବାହାହେଲେ କାଳୀ ଝିଅ ଜନମ ହେବ । କାଳୀ କନିଆ ବାହାହେଲ୍ ବେଳକୁ ଏତେ ବାଡପୁରୁସି ବାହାରୁ ଥିଲ—ଏତେ ଗୋଡ଼ ଲମ୍ବା ଲମ୍ବି ଗୁଳିଥିଲ, ଏଇକ୍ଷିଣିକା ବାହା ଦେଲ୍ବେଳକୁ ହୁଦ ବଦାର ହୋଇ ଯାଉଛୁ ? ଜଗନ୍ନାଥେ ବଡ଼ ଲୋକ । ମନ ଜାଣି ଫଳ ଦେଇଛନ୍ତ । ଉଝେଇଲ୍ ବାଡ଼ ବାହୁଡ଼ ଆସିଛୁ । "କଲଗ ପତର ଝନ ଝନ କେନା ଢହିଁରେ ମାରଲ ଘିଅ—ଆଗପଛ ବୁଝି ପାହୁଣ୍ଡ ଝେକ୍ବୁ ପିଠିରେ ବାଜବ ଡ଼ିଅ । ଠିକ୍ ହେଇଛୁ, ଏବେ ମଜା ବୁଝ ।"

ଏ ଯେଉଁ ଗାରଡ଼ ପଦ, ଜଷ ନା ତା ବାପା ରହିବ ଆଉ । ଗରମ ମିଜାଜ ମୋର ଏକଦମ୍ ହେମ କାକର । କୋଚଟି ପର ପିଲ୍ଲ ବୁଲେଇ ଆପଣା ମାନେ ମାନେ ରାସ୍ତା କାଟିଲ । କଥା ଯାଇଁ କେଉଁ ମାର୍ଗରେ—ମୁଁ ମିଛେ ମିଛେ ହୁମହୁମ ହେଉଛୁ । ଆପଣା ହସ୍ତେ ଜିହ୍ବା ଛେଦ—ଦୁଃଖ କହିବ କାହାକୁ ?



# ପୃଥିବୀ ଭୋଳ

' ଏ ଛୁଡ଼ା ଲେଙ୍କୁଡ଼ି ଖଣ୍ଡକ ଗୁଡେଇ ପୁଡ଼େଇ କେତେଦିନ ଆଉ ଗରଜ ମେଣ୍ଟାଇ ନେବ ? କେତେ କେତେ ତ ବରଷ ମୁଣ୍ଡ ପିଇଲ । ଆଉ କଣ ଅଜମ୍ବର ହେଇ ଦେହାକଯାକ ବଇଁଡି ଯିବ ? କାଳି ଯହା ହେଲ୍ ? ମଣିଷର ମାନ ମହତ ଦିକଡ଼ା । ତୁମେ ଯେଉଁଠି ନାଦୁର ଥିବ, ପକ୍କା ନାଟର ଗୋବର୍ଦ୍ଧନ ଦାସ । ତାରଣୀବାବୁଙ୍କ ଘରୁ ବୁଲି ଆସିବେ ବୋଲି ତ ତୁମେ କେଉଁ ସକାଳ ପହରୁ ଜାଣିଥିଲ । ଖବରଟା ଏଡ଼େ ବେଗି ଦେଇଦେଲ ? ସେମାନେ ଆସି ପହଞ୍ଚିଲ୍ ବେଳକୁ ମୁଁ ମୋର ଏ ପୀତାମ୍ବର ଖଣ୍ଡଟା ଅଣ୍ଟାରେ ଭିଡ଼ିଦେଇ ବସି ଘସି ତାଡ଼ୁଛୁ । ମୋ ମୁହଁତ ଛତୁ ହୋଇଗଲା । ଯୋଗକୁ ପା ବ୍ରହ୍ମା ଖଟନ୍ତନ । ସେତକ ବେଳକୁ ଏ ମାଙ୍କଡ଼ ଟୋକା ଖଣ୍ଡକ ନାକରୁ ମକରନ୍ଦ ଧାର ଗଡ଼ାଇ ମୁହଁ ହାତରେ ବୋଝେ ବୋଝେ ହାଣ୍ଡି ତଳ କଳା, ତୁମର କୋଟେ ଶରକୁଟୀ ଗାମୁଛା ବକଟେକ ବେକରେ ପକାଇ କାର୍ତ୍ତିକେଶ୍ୱର ମେଢ଼ ସାଜ ଚେହେରାଟାକୁ ବିସ୍ତାରିକ ବସିଛୁ । ଗୁରିପାଖରେ ମେଞ୍ଚେ ପଶରା ଗୁପା, ପାନଡ଼େମ୍ଫ, ଧତଡ଼ା ପିତାତରଡ଼ି ପାରୁରୁ ଫାଟେଳ, ମୁଣ୍ଡି ଗୁଞ୍ଜୁଣିଟା—ଖତମତି ଗୋଟେ ଆବର୍ଜନାର ବାରୁଆଳୀ । ଫୁଟା ବାଳଭିଟା ଯେ ପିଣ୍ଡା ସାରା ଝାଣି ବୋହ ପଚପଚ, ଟିକିଏ ଠାବ ନାହିଁ, କେଉଁଠି ବସିଯିବେ । କଣ ଭାବିଥିବେ କୁହନ ? ଦଶାଯୋଗକୁ ତରବରରେ ହାତଧୋଇ ଦେଖେଁ ତ ଗୁଆ ଫାଳେ ଅଛି ଯେ ପାନ ଖଣ୍ଡେ ନ ଦେବ । ମୁହଁ ମୋର ଥୋବରା ହୋଇପଲ୍ । ହଁ, ବେଣୁଆମା ଆଜ କୁନାର ଦୁଧ ଦେଇନ । ପଇସା ମାଗି କଣ ଭଣିଭଣି ହେଇ ଯାଉଥିଲ, ମୋ ଦେହ ବ ଚଢ଼ିଲ୍ । ଖାଇତ ଆଉ ବୁଡେଇ ଦେଉନୁ । ଦପଦ ଶୁଣେଇ ଦେଇଛୁ କ ନାହିଁ ଆଉକ ସମଳା ପଡେ ? ଘର ଦ୍ୱାର ଭାଙ୍ଗି ତ ଏକାବେଳକେ ଉଭା ନଙ୍ଗଳା । କେତକୀ ବୋଉଠିଁ ମୁଦିଟା ରଖି ବେଖାର ଦେବା ଲଗି ଯେଉଁ ଉଧାର ଆଣିଥିଲ ସେ ଆସି ମୁହଁ ହାଣ୍ଡି କରି ପଚିଶଥର ଫେରିଗଲାଣି । ଯାହା ହେଉ ତା କଥା ବୁଝ । ଏକା ମାଘକେ ଶୀତ ଯାଏନ । ଆଉ ବେଳକୁ ଆଉ କଥା ଅଛି ନା, ମୁଁ ଆଣିଥିଲି ବୋଲି ମୋର କାଇଲ ।"

ଭଜା କୋଳଥ ମାଣେ ହେବ ପେଷାରେ ରଗଡ଼ୁ ରଗଡ଼ୁ ନିରୁପମା ମୁହଁ ଶୁଖାଇ ଶେଷ କେତେଟା ପଦ ଗୋଟେ ନିଃଶ୍ୱାସରେ କହି ପକାଇଲା । ପିଠିର ଫଟା କବାଟା ଫାଙ୍କଦେଇ ମେରୁଦଣ୍ଡଟା ଉପରକୁ ସିଧା ଠିଆ ହୋଇଛି ଦୁଇପାଖ ଅଧିତ୍ୟକାରୁ ନିଜର ସ୍ୱାତନ୍ତ୍ର୍ୟକୁ ପୂରାପୂରି ବଜାଇ ରଖି । ଲହୁକୁ ପାଣି ଫଟେଇ ଖଟି ଖଟି ଲୋକଟା କଣ ସତେ ହେଲାଣି ! ଗୁଡ ଭିତରଟା ଦରଦର ରୂପରେ ଓଜନିଆ ହୋଇ ଉଠିଲା । ମୁଣ୍ଡରେ ଧୂଳା ଧୂଳା ଚିବ, ତାରି ଭିତର ଦେଇ ବେଳେବେଳେ ଆଙ୍ଗୁଳି ଗଳାଇ ଘର୍ଷି ପକାଉଛି । ହୁଏତ ବାଳଗୁଡ଼ାକୁ ଟିକିଏ କୁଣ୍ଡେଇ ନେବା ସମୟ ବା ସୁବିଧା ପାଇନି ।

"ଅଦ୍ୟ ଉଜମି ଗୁଣ୍ଡା ଉଠେଇବା ମହୋତ୍ସବରେ ମୁଖ୍ୟ ପୁରୋଧା ରୂପେ କାର୍ଯ୍ୟ ନିର୍ବାହ କରିବେ କିଏ ଏହି ମହାମାନ୍ୟ ଦରପୋଡ଼ା କୋଳଥ ?" ଅଶ୍ରାକରି ହସିଲି । ନିରୁପମା କଥାଟାକୁ ଚୁମ୍ବକରେ ଉପଭୋଗ କରିନେଇ ମୁହୂର୍ତ୍ତରେ ମୁହଁ ଶୁଖେଇ ପକାଇଲା । "ଆଉ କଣ ଅଛି ? ହାଟ ସଉଦା ହେଇନି ମନେ ନାହିଁକି ? ଗୋଟା ପଇସା ଅନ୍ତତଃ ଅଛିନା ହଇଁନି । ଖଣ୍ଡ ପୁଳାଏ ହେଲେ ଯୋଗାଡ଼ କରିନିଏ । ଖାଇବା କମିଛି ସତେ ~~ଟିକି~~

-ପକେଟ ଭିତରଟାକୁ ଗୋଟେ ନାଲି ପଗଡ଼ିଆ ଧୂମ୍ ଧାମ୍ ତଲାସ କରିନେଇ ନିରସ୍ତ ହୋଇ ଖଟ ଉପରେ ଚିତ୍‌କାତ୍ ବିଶ୍ରାମ ନେଲି ।

କବାଟ ଖଟ୍ ଖଟ୍ ହେଲା—"ବାବୁ ଘରେ ଅଛନ୍ତି ?"

କିଏ ? ଓ, ମୂଳଗୃହ ମୁନସି ଖାରସେଣ୍ଟ୍ । ଉଦ୍ଦେଶ୍ୟର ବିଶଦ ବ୍ୟାଖ୍ୟା ଦରକାର ପଡ଼ିଲାନି । ଘରଭଡ଼ା ପାଞ୍ଚମାସ ପୂରିଯାଇ ଷଷ୍ଠର ଭିନକ୍ୱାଟର ବି ଟପି ଗଲାଣି । ନିରୁକୁ ଇସାରାରେ ଡ଼ାକି ଧୋବ ପତାକା ଦେଖାଇ ଆତ୍ମରକ୍ଷାର ନିର୍ଦ୍ଦେଶ ଦେଲି । ସେ ଭିତରୁ ଜବାବ ଦେଲା— "ବାବୁ ଘରେ ନାହାନ୍ତି ।"

"ଆମେ କାଣ କାମ୍ ନୁକସାନ୍ କରେକେ ରୋଜ ରୋଜ ଦୌଡ଼ୁଥିବା । ବାବୁକୁ କଇଦବା ଭଡ଼ା ନହିଁ ଦେନେସେ ପନ୍ଦ୍ରଲାରୁ ଘରସେ

ନିକାଲ ଜାନା ହେ ।" ଯୋଡ଼ା ମଚ୍‌ମଚ୍ ଆଓ୍ୱାଜ୍ ପିଣ୍ଡାରୁ ତଳକୁ ଗଡ଼ିବା ସଙ୍ଗେ ସଙ୍ଗେ ସ୍ପଷ୍ଟ କାନରେ ବାଜିଲା ମଧୁର ସମ୍ଭାଷଣ "ବାବୁ, ବାବୁ, ଭିତରେ ବାବୁକୋ ଐସେ ଭେଜେ । ତମାସା ଚଲ ରହାହେ । ଊଁଚୀ ଦୁକାନ୍--ଫିକା ପକ୍‌ଓ୍ୱାନ ।"

କବାଟରେ ପୁଣି ଖଟ୍ ଖଟ୍—ପୁଣି କିଏ ଏ ରଥୀ ? ବିନା ନିର୍ଦ୍ଦେଶରେ ନିରୁ ଆଗେଇଲା । "କିହୋ ଅପୂର୍ବ, ଆସ ଆସ । କମିତି ଆଜି ଏଠି ପାଦରଜ ପଡ଼ିଲାମ ? ନିରୁ ଟାଣି ଟାଣି ଆଣି ସପ ପକାଇଲା । ସ୍ୱସ୍ତିର ଗୋଟାଏ ନିଃଶ୍ୱାସ ଗୁଡ଼ିତ ଝରକା ଫାଙ୍କରେ ଉଙ୍କିମାରି ଦେଖିଲା । ରଜନୀ ବାବୁଙ୍କ ସ୍ତ୍ରୀ ସାଇ ପଡ଼ଶା । ଇଂଲିଶ ଅଫିସରେ ରଜନୀ ବାବୁ କିରାନୀ । ବେଶ୍ ଦି'ପଇସା ହୁଏ । ସୁରଖୁରରେ ଚଳନ୍ତି ।

"କୁନା, ବାବା ଅଛନ୍ତି ନା" ?

ନିରୁ ମୁଣ୍ଡ ହଲାଇ ନାସ୍ତିର ସୂଚନା ଦେଲା ।

"ବସିବି କଣ ତରଅଛି ? ଗୋଟିଏ ଗୋଟିଏ ଆସିଛି ଗୋଟିଏ ଗୋଟିଏ ଯିବ । କୁନା ମା ଗୋଟେ ବଡ଼ ଦରକାର ଏକା । ଟଙ୍କା ରଖିବ ତ ? ତାଙ୍କର କଣ ସାହାବ ଆସିବେ ଯେ ଗୃହଦାନ ହୋଇ ଫେରୁ ଫେରୁ ରାତି ଦଶଘଡ଼ି । ଘରେ ଦି'ଜଣ କୁଣିଆ ଆସି ବସିଛନ୍ତି । ପୋଷେ ବୋଲି ଘରେ ଗୁଡ଼ଜା ନାହିଁ । ଚୂଡ଼ା ମୁଢ଼ି ଯାଇତାଇ ଗଣ୍ଡେ ରାତିରେ ଖାଇ ଶୋଇ ପଡ଼ିଥାନ୍ତୁ । ଅଛି ତ ଗୁଡ଼ଜା ସେରେ ଆଉ ଲୁଣ ଗିନେ ଦିଅ । ମୁଁ କାଲି ଆଣିଦେବି କହିଲି, ଭଉଣୀ ବଡ଼ ଦାଦଗଞ୍ଜରେ ଦେହକଷ୍ଟ କଟିଲା । ଆଜିକାଲି ଯେଉଁ ନିଅଣ୍ଟିଆ ବଜାର । କେତେଟା ବା ଟଙ୍କା । ଫୁଙ୍କିଦେଲେ ଓଳକୁ ବି କୁଳେଇବନି ।"

ତରବରରେ ପଡ଼ୋଶ ଘରଣୀ କୁଣିଆ ଚର୍ଚ୍ଚା ପାଇଁ ଗୁଡ଼ଜା ଧରି ଫେରିଲେ । ରଜନୀ ବାବୁ—ଇଂଲିଶ ଅଫିସ କିରାନୀ । ଗୁଜବ ଉଠେ ଖୁବ୍ ଚଉଡ଼ା । ସଞ୍ଜବୁଡ଼ିଲାତ ପକେଟ ଗରମ । ମନରେ ଟାଣି ହୋଇଗଲା ଗୋଟେ ସନ୍ଦେହରେ ପ୍ରଶ୍ନବାଚକ । କଥାଟା କମିତିକା କମିତିକା ଲାଗିଲା ।

ନବୁ ଉପରେ ଗୋଟେ ଆତ୍ମଶ୍ଳାଘାର ଗହ୍ୱର ଗୃହାଣି ପକାଇ ବୁଲିବାକୁ ବାହାର ପଡ଼ିଲ ।

"କରେ ଦିନେଶ ତୁ କେତେବେଳୁ ?" ଦିନେଶକୁ ଅଗ୍ରନକ ପ୍ଲାଟଫର୍ମରେ ଦେଖି କୁଣ୍ଢେଇ ପକାଇଲ । ଦିନେଶ ପିଲଦିନ ସାଙ୍ଗ ପଢ଼ୁଆ ଅନ୍ତରଙ୍ଗ ସାଥି । ଖୁବ୍ ମନ ମିଳୁଥିଲା ଓ. ଟି. ଏମ୍‌ରେ ଚାକିରି ପାଇଛି । କମ୍ପାନୀ ନୌକରୀ ।

ବେଶ୍ ତରେ ଲୁଚ ଲୁଚ ବୁଲୁଛୁ । ପାଣି ପକେଇ ମୁଁ ତତେ ଖୋଜୁଛି । ଦେଖା ନାହିଁ, ଦର୍ଶନ ନାହିଁ । ବନ୍ଧୁବାନ୍ଧବ ଆସିଲେ, ଶଙ୍କୁଳା ଶଙ୍କୁଳି ଖିଆପିଆ ମାନଥାନ କିଛି ନାହିଁ ? ସତରେ ସେମାନଙ୍କ ପାଖରେ ଗୋଟେ ଘର ଦରକାର ଥିଲା ।" ଦ'ଟା ସିମେଣ୍ଟ ବେଞ୍ଚ ଉପରେ ଗୋଟେ କଡ଼ାକୁ ଆଉଜାପଡ଼ି ସିଗାରେଟ୍ ଖଣ୍ଡେ ଯାଚିଲା ।

"ହଁ ଭାଇ କହିବନ କାହିଁକି ? ଅଫିସର ହେଲେ, ମିଜାଜ୍ ଗରମ, ପକେଟ ଭରି । ଫ୍ରି କ୍ୱାଟର ବୋନସ, ପ୍ରୋଭିଡେଣ୍ଟ ଫଣ୍ଡ ସବୁ ରକମ ପ୍ରିଭିଲେଜ୍ ସିକୁରିଟି ଅଫ୍ ସର୍ଭିସ, ଆମ ଭଳିତ ଆଉ ଜଗା ମଧୁଆଙ୍କ ହୁଇମ୍ ଉପରେ ନିର୍ଭର କରୁନ । ବାରଭାଇ ଆଖଡ଼ାଘର ଟିପଟିଆ ଅଥବା ତଳ ନିମ୍ନେକ୍ଷିତ ପ୍ରାଇଭେଟ୍ ସ୍କୁଲର ଦୁଃସ୍ଥ ଶିକ୍ଷକ ଜୀବିନକୁ ... ନକରିବ ତ କ୍ଷେତ୍ର ଆଉ ପାଇବ କେଉଁଠୁ ? ସେଥିରେ ପୁଣି ଦରମା ମାସଧାରି ବାକି । କେବଳ ଟିକିଏ ବ୍ରେକ୍ ଟା ଧର । ଏଣେ ତାଙ୍କ ଶ୍ରବଣ ଉଚ୍ଛୁଳ ଉଠିଲଣି ଯେ । ଆରେ 'ସମସ୍ତଙ୍କ ପରିସ୍ଥିତିଟା ସମସ୍ତଙ୍କୁ ଦିଲ୍ଲୀକା ଲଡ୍ଡୁ । ମୋ କଥାତ ? ଉଦୟ ଅସ୍ତ ଚାକିରୀ ସାବଧାନ ମୁଁ ଗଧ ଘୁଷୁରୀ ଏତେ ଖଟିବ ନା ଗ୍ରୁଡ଼, ଟ୍ରେନ୍ ଟା ଫେଲ ହୋଇ ଗଲରେ । ଗଣ୍ଡ ଗାଡ଼ିରେ ଯିବ । ଜଏନ୍ ନକଲେ ମେନେଜିଂ ଡାଇରେକ୍ଟରଙ୍କ କାନ ପର୍ଯ୍ୟନ୍ତ ବାର୍ତ୍ତାଟା ଏକଦମ୍ ସିଧା ସିଧା ଗଡ଼ କରିବ । ଡରୁ ଡରୁ ମୁଁ ଅଧା ମଲଣି । ତୋ କ୍ୱାଟରଟା ପାଖରେ ନା ? କଣ କରିବ କହନ ? ତୁ ଫେଆରଟା ଅନ୍ତତଃ ଯୋଗାଡ଼ କର ନ ଦେଲେ ଯିବ କମିତ ? ଯାହା ଥିଲ ଖର୍ଚ୍ଚ ହୋଇଗଲା । ଭାଇ ଚାକରିଆ

ଜୀବନ । ବୁଝୁଥିବୁ ସବୁବେଳେ ଅଫିସିଅଟ୍ ବଜେଟ୍ । ତାପରେ ଶ୍ରୀମତୀଙ୍କ କରୁଣାର ଅପାର । ବାବା ଟିକିଏ ଫୁରସତ୍ ସବବାର୍ ଦିଅ । ଫି ବର୍ଷ ଆଦ୍ୟ ଆଷାଢର ବାରପାତ ହେଲା ତ ଘରେ ଏଣେ ପୁଣି ଏକ ନୂତନ ଅତିଥି । ଭୁଲରେ ଯଦି ନାଙ୍କର କାଗଜ୍ ପଢିଅଧ କହିଲ ତ,ଏକ ତରଫା ଜୋର ଜବରଦସ୍ତ ତର୍କରେ ସାବ୍ୟସ୍ତ ହେବ ଦୋଷ ତୁମର ଶତକଡ଼ା ଶହେ । ଚତୁର୍ଥପରେ ପଞ୍ଚମର ସୂତ୍ରପାତ । ଘରେ ଛୁଡ଼ଦେଇ ଆସିଛୁ । ଟିକିଏ ହାଇରାଣରୁ ମୁକ୍ତ ପାଇବ । ଅଫିସରୁ ଫେରି ଘରେ ଗୋଡ଼ ଦେଲ ତ ଥର୍ମୋମିଟର ଭଳି ଗୋଟେ ଅନବରତ କାଖରେ ଯାକିଥିବ । ନହେଲେ ନିମିଷକେ କୁରୁକ୍ଷେତ୍ର ସୃଷ୍ଟି ।

ଦିନେଶ ମୋ ପାଟିରୁ କଥା ଛଡ଼େଇ ନେଇ କହି ଗଲେନି ତା ଖିଆସିଆ ସ୍ୱଭାବ ଭାଙ୍ଗି ଯାଇନ । ଭଲ ଲାଗିଲା । ବସାଟା ମାଇଲକରୁ କମ୍ ଥିଲେବି କୋଳଥ ସୁଣ୍ଡ ଦୁଇ ମାଇଲ୍ କହିବାକୁ ମନଭିତରୁ ନହାତି ବାଧି କଲା । ବାଟରେ ପଡିବ ଜଙ୍ଗଲ, ନଗୁଟିଆ, ରାସ୍ତାଟା ଅନ୍ଧାର ରାତି, ଗାଡ଼ି ଆସୁଆସୁ ରାତି ବାର, ଇତ୍ୟାଦି ଇତ୍ୟାଦି କେତେଟା ଅସୁବିଧାର ଅବତାରଣା କୌଶଳରେ କରି ଯିବାପାଇଁ ଉପର ଠେଲିଆ ଦେଖାଣିଆ ହାର୍ଦ୍ଦିକ ଛଦଟେ ଧରି ଗାଢ଼ମିତ ଚଣା ଓଠବା ଲଗେଇଲ । ମୁହଁରେ ଆପସା ମାରୁଥାଏଁ, ମନଟା ତେଣେ ବସି ଖିପି ଉଠୁଥାଏ – କାଳେ ହଁ ଭଳି କରିଦିଏ । ଶେଷକୁ ଶିକାର ଥୋପ ଧଇଲା । ଦିନେଶ ରାଜି ହେଲାନି । "ଭାଇ, ମାଖରେ ନାହିଁ—କେଉଁଠି ଯୋଗାଡ଼ କରେ"—କହି ଅନ୍ୟଆଡ଼େ ମୁହଁ କାଟିଲି । କେତେଥର କମ୍ପାନି ସର୍ଭିସ ଖଣ୍ଡିକ ପାଇନାହିଁ ବୋଲି ଝୁରି ଝୁରି ଖାଇଛୁ । ମନଟା ବି ଲାଳେଇ ଉଠିଛୁ । ଆଜ ଜୀବନର ଅବଶୋଷ ଗୁଡ଼ାକି ପାଣିଚିଆ ପଡ଼ି ଆସିଲା ।

ରାସ୍ତାର ମୋଡ଼ ଆଡ଼କୁ ଜଣାଶୁଣା ପୁରିଆ ସାହୁ ତେଲଭଜା ଦୋକାନ । ବାଉଁଶ ବଇଁଠି ଉପରେ ବସିବା ପାଇଁ ଅଣଓସାରି ପଲଖ ପଟାର ଯୋଡ଼ିଆ । ନଜର ପଡ଼ିଲା—ଆରେ ପାତ ବାବୁ ଯାହା ହେଉ,ନାହିଁ କରିବେନ । ଭଲ ମଣିଷ । ମୋ ଭଳିତ ସବୁବେଳେ ନାହିଁ ନାହିଁ ଭିତରେ ଜୀବନଟା ଦଦରା ରିକ୍ସା ଗାଡ଼ି ଭଳି ଦୁର୍ବହ ହେଇ ଉଠିନ । ପୋଷ୍ଟ ମାଷ୍ଟରଙ୍କ ସେଣ୍ଟ୍ରାଲ ଗଭର୍ଣ୍ଣମେଣ୍ଟ ଚାକିରୀ । ପାଖକୁ ଯାଇଁ ରାସ୍ତା କଡ଼ରେ

ଅପେକ୍ଷା କଲି—ଭଦ୍ରଲୋକ ଫେରନ୍ତୁ । ବାସୀ ଚନ୍ଦନର ଚେମଡ଼ ଶେଉ ଦାମୁଠା ଚଟାଚଟ ଗୋଟେଇ ଦେଇ ଶୁଖିଲା ପକୁଡ଼ି କେତେ ପୁଞ୍ଜା ଜଲଦି ଜଲଦି ପାକୁଳେଇ ନେଲେ । ଝୋଲା ସିଲଭର ଗ୍ଲାସରେ ପାଣି ଦୁଇ ଗ୍ଲାସ ପର୍ଯ୍ୟନ୍ତ ଢକ ଢକ ପିଇ ସେଲୋଲଏଡ଼ର ପକେଟ ପାନିଆଟା ଚଉ ଉସ୍କୁଖଳ ବାଳ ଭିତରେ ଗଳାଇ ସାଉଁଳାଉ ସାଉଁଳାଉ ଉଠ ଉଠ ହେଲେ । ଫୁଲପେଣ୍ଟଟା ପାହୁଲରୁ ଉଠି ଗୋଡ଼ଗଣ୍ଠି ପାଖରେ ଅଟକୁଛି, ତଳକୁ ଗଙ୍ଗଟା ଫିଟେଇଦେଇ ଗ୍ରାଣ୍ଟ କରାହେଇଥିଲେ ସୁଦ୍ଧା । ସିଲେଇ କଡ଼ରୁ ତଳକୁ ଧୋବା ଅତ୍ୟାଗ୍ରହରେ ଛେଚରା ହୋଇ ଦଶପାଞ୍ଚ ପାରୁବ ଉଠିଛନ୍ତି । ଚଉଆନା ଟିକିଏ ଏକବାଗିଆ ମୁହଁଖୋର ଲୋକ । ବାକି ପଇସାପାଇଁ ଧୈପଦ ମଖମଲ ଶୋଧନା ଶୁଣେଇ ଦେଇ ତମତମ ହୋଇ ଗୃହା ହାଣ୍ଡି ଠେକିଲା । ଘଟଣା ଛଳରେ ବର୍ତ୍ତମାନର ଆର୍ଥିକ ଶୋଚନୀୟତା ଟାକୁ ଏପାଖ ସେପାଖ କରି ଗେଁ ଗାଁ ହୋଇ କହିପକାଇ ପାରିବାକୁ ଉଠିଲେ । ସାନ୍ତ୍ୱନା ଦେଇ କହିଲେ—ଖୁବ୍ ଡେରି ହେଲେ ସପ୍ତାଏ । ମୁଁ ବି ମନ-ମୁତାବକ ସାନ୍ତ୍ୱନାଟା ପାଇ ସିଧା ରାସ୍ତା ଆଡ଼କୁ ମୁହାଁଇଲି—ଯୁଆଡେ ଗଲେବି ପୃଥିବୀଟା ଗୋଲ ବାବା ।

